# ଯାଜପୁର ମାଟିର ଅମର ସନ୍ତାନ

## (୧ମ ଭାଗ)

*ଲେଖକ : ପ୍ରଫୁଲ୍ଲ ଚନ୍ଦ୍ର ରାୟ ଏମ : ଏ (ଓଡିଆ) ବି. ଏଡ୍*

ସା : /ପୋ : ଉଦରଂଗ

ଭାୟା - ରାମବାଗ, ଯାଜପୁର, ଓଡିଶା

ପ୍ରକାଶିକା [illegible] **ମହାନ୍ତି**

[illegible]

ମୁଦ୍ରକ : ଏକ୍‌ସେଲ୍ ଗ୍ରାଫିକ୍‌ସ, ୬୩୮, ସହିଦ ନଗର,

ଫୋନ : ୯୯୩୭୪୧୨୩୨୨

ପ୍ରଚ୍ଛଦପଟ ଚିତ୍ର (ବିରଜା ମନ୍ଦିର, ଯାଜପୁର)

ଯୋଗାଯୋଗ ଠିକଣା : ପ୍ରଫୁଲ୍ଲ ଚନ୍ଦ୍ର ରାୟ

ସହକାରୀ ଶିକ୍ଷକ, ବ୍ରଜସୁନ୍ଦର ଉଚ୍ଚ ବିଦ୍ୟାଳୟ

ସା : /ପୋ : ସୟଦପୁର, ଯାଜପୁର

ପ୍ରଥମ ସଂସ୍କରଣ -୨୦୦୫

ମୂଲ୍ୟ - ୬୨.୦୦ ମାତ୍ର

# ସୂଚୀପତ୍ର

## (୧ମ ଭାଗ)

# ଅଭିମତ

ଅବହେଳିତ ଯାଜପୁର ମାଟିର ସଂସ୍କୃତି ଓ ଐତିହ୍ୟ ସର୍ବଜନ ବିଦିତ । ଭାରତୀୟ ଧର୍ମଧାରା, ଶିକ୍ଷା-ସାହିତ୍ୟ-ଇତିହାସ-ସଂସ୍କୃତି-ପତ୍ନତତ୍ତ୍ୱ ଓ ସାମାଜିକ ପରଂପରା କୁ ଏ ପ୍ରାଚୀନ ଅଂଚଳର ଅବଦାନ ଅନନ୍ୟ । ଏଯାବତ୍ ଏହାର ସମସ୍ତ ବିଭାଗର ସଂପୂର୍ଣ୍ଣ ଓ ସଠିକ୍ ଆଲୋଚନା ହୋଇନାହିଁ ଏବଂ ଆଧୁନିକ କାଳର ଅନେକ ବ୍ୟକ୍ତି ଏହି ମହାନ ପାରମ୍ପାରିକ ତୀର୍ଥଭୂମିର ଭୂୟୋବିକାଶ ତଥା ପ୍ରାଚୀନ ପରଂପରାର ପ୍ରଚାର ଓ ପ୍ରସାର ନିମିତ୍ତ ଅନୁପ୍ରେରିତ ହେବା, ଶୁଭଂକର ମନେ ହେଉଛି ।

ଯାଜପୁର ମାଟିରେ ଜନ୍ମ ଗ୍ରହଣ କରି ସ୍ୱ-ପ୍ରତିଭା ବଳରେ ଯେଉଁମାନେ ସେମାନଙ୍କର ଜନ୍ମମାଟିକୁ ଧନ୍ୟକରି ଯାଇଛନ୍ତି । ସେମାନଙ୍କ ଜୀବନୀ ଓ କର୍ମପ୍ରବାହ ର ଆଲୋଚନା ଏ ପର୍ଯ୍ୟନ୍ତ ଆଦୌ ହୋଇନାହିଁ କହିଲେ ଚଳେ । ସେହି ବରପୁତ୍ର ମାନଙ୍କର ଜୀବନାୟନ ଉତ୍ତରପୁରୁଷ ମାନଙ୍କୁ ଯେ ଉଦ୍‌ବୁଦ୍ଧ କରିବ ଏଥିରେ ସନ୍ଦେହ ନାହିଁ । ସେହି ଅମର ସନ୍ତାନ ମାନଙ୍କ ଜୀବନ ଗାଥା ସାମଗ୍ରିକ ଭାବେ ଯାଜପୁର ଇତିହାସ ଓ ସଂସ୍କୃତିର ଏକ ମୁଖ୍ୟ ଆଙ୍ଗିକ ଏ କଥା ଅନସ୍ୱୀକାର୍ଯ୍ୟ ।

ଶ୍ରୀମାନ୍ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଜଣେ ଶିକ୍ଷାବିତ୍ ଗାଳ୍ପିକ, ନାଟ୍ୟକାର ଓ ସର୍ବୋପରି ଏକ ନିରଳସ କର୍ମଯୋଗୀ । ଜୀବନ ଜଂଜାଳ ର ନିଗଡ ଛନ୍ଦ ମଧରେ ସେ ସାହିତ୍ୟ ଓ ସଂସ୍କୃତି ନିମିତ୍ତ ସାଧନାରତ । ତାଙ୍କର ଭିନ୍ନସ୍ୱାଦର ପୁସ୍ତକ "ଯାଜପୁର ମାଟିର ଅମର ସନ୍ତାନ" ପାଣ୍ଡୁଲିପି କୁ ଆମୂଳଚୂଳ ପାଠ କରି ଅନୁଭବ କଲି ଯେ ସାହିତ୍ୟ ଓ ଇତିହାସ ର ଏକ ମନୋଜ୍ଞ ସମୀକରଣ ପୁସ୍ତକ ର ଏକ ବିଶେଷତ୍ୱ । ସାହିତ୍ୟ ମଧରେ ଇତିହାସ ର ତର୍କ ସଂଗତ ଅବତାରଣା ଖୁବ୍ ମନଛୁଆଁ

ଯାଜପୁର ମାଟି ସହିତ ସଂପୃକ୍ତ ଓ ଯାଜପୁର ମାଟିରେ ଜନ୍ମିତ ତେରଜଣ ସୁପରୁଷ ଙ୍କ କର୍ମମୟ ଜୀବନ ଉପରେ ଏକ ଏକ ଆଲେଖ୍ୟ ସେ ପ୍ରସ୍ତୁତ କରିଛନ୍ତି । କାରଣ ସେମାନେ ଏ ଯାବତ୍ ଅନାଲୋଚିତ ହେଲେ ମଧ ଅନନ୍ୟ । ତାଙ୍କର ଏହି ଉଦ୍ୟମ ପରବର୍ତ୍ତୀ ପିଢୀ ପାଇଁ ପ୍ରେରଣା ଦାୟକ ହେବାର ସମ୍ଭାବନା ଖୁବ୍ ଉଜ୍ଜ୍ୱଳ । ଅଧିକନ୍ତୁ ତାଙ୍କର ଏହି ଗବେଷଣାତ୍ମକ ପ୍ରବନ୍ଧ ସଂବଳିତ ଜୀବନୀଧର୍ମୀ ପୁସ୍ତକଟି ନୂତନ ଗବେଷକ ମାନଙ୍କ ପାଇଁ ଉପାଦେୟ ହେବ ଏଥିରେ ସନ୍ଦେହ ନାହିଁ । ମୋର ଆନ୍ତରିକ ଇଛା ଶ୍ରୀମାନ ରାୟ ଏହି ପରି ଅନେକ ରଚନାରେ ବ୍ରତୀ ହୁଅନ୍ତୁ । ମୁଁ ତାଙ୍କର ଏ ପୁସ୍ତକର ବହୁଳ ପ୍ରସାର କାମନା କରିବା ସଂଗେ ସଂଗେ ଈଶ୍ୱରଙ୍କ ନିକଟରେ ତାଙ୍କର ଦୀର୍ଘଜୀବନ ସହ ଅବାରିତ ଲେଖନୀ ଚାଳନା ଗତିଶୀଳ ହେଉ ବୋଲି କାମନା କରୁଛି ।

।।ଇତି।।

ଡଃ ଏକାଦଶୀ ପାଢୀ

ତରାଙ୍ଗ ସାଗରପୁର, ଦଶରଥପୁର

ଯାଜପୁର, ଓଡିଶା

# ଉତ୍ସର୍ଗ

ମତେ ଯାଜପୁର ର ଐତିହ୍ୟ, ସଂସ୍କୃତି, ଇତିହାସ ଓ ପରଂପରା ଆଡକୁ ଆକର୍ଷିତ କରିଥିବା ବ୍ରଜସୁନ୍ଦର ଉଚ୍ଚ ବିଦ୍ୟାଳୟର ପୂର୍ବତନ ପ୍ରଧାନ ଶିକ୍ଷକ ତଥା
"ଚିନ୍ତନ ଚକ୍ର" ଓ "ଯାଜପୁର ନାଗରିକ ପରିଷଦ'' ର ଆବାହକ
ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ବିଶ୍ୱାଳ ଙ୍କ
କରକମଳ ରେ
କ୍ଷୁଦ୍ର ପୁସ୍ତକଟିକୁ ଅର୍ପଣ କରୁଛି ।

ପ୍ରଫୁଲ୍ଲ ଚନ୍ଦ୍ର ରାୟ



# ମା ବିରଜା

ଧୃତ କନକ ନିଭାଭା
ଶୂଳ ଲାଙ୍ଗୂଳ ହସ୍ତା
ପ୍ରବଳ ମହିଷ ପୃଷ୍ଠେ
ଶୂଳ ମା ଭେଦ୍ୟମାନା
ଗଣପତି ଫଂଣିସମ୍ରାଟ
ଯୋନି ଲିଙ୍ଗେନ୍ଦୁ ଚୂଡା
ରଚୟତୁ ବିରଜା ମେ
ମଂଗଳଂ ମଙ୍ଗଂଳାନାମ

# ମୁଖଶାଳା

ଯାଜପୁର ର ଇତିହାସ, ସଂସ୍କୃତି, ପରଂପରା, ର କିଛି ସ୍ୱତନ୍ତ୍ର ବାସ୍ନା ଅଛି ବୋଲି ଛାତ୍ର ଅବସ୍ଥାରୁ ଶୁଣିଆସିଥିଲି, ବଡ ବଡ ଐତିହାସିକ, ପଣ୍ଡିତ ମାନଙ୍କ ଲେଖା ରୁ କଥାରୁ, ଯାଜପୁର ର ପ୍ରାଚୀନ ଗୌରବ ସମ୍ବନ୍ଧ ରେ କିଛି କିଛି ଶୁଣି, ପଢି ଭାବୁଥିଲି ଯେ ଏମାନେ ଆମ ଅଂଚଳକୁ ଆସିଥିବାରୁ, ଆମ ଅଂଚଳକୁ ଟେକାଟେକି କରି ବୋଧେ କହିଚାଲୁଛନ୍ତି । ପିଲାବେଳୁ ଇତିହାସ ସହିତ ମୋର ପଡେନାହିଁ, କାରଣ ମୁଁ ଗଣିତ ର ଛାତ୍ର । ପରିସ୍ଥିତ ରେ ପଡି ମୁଁ ଓଡିଆ ସାହିତ୍ୟ ରେ ଏମ୍. ଏ ପରୀକ୍ଷା ଦେବାକୁ ଇଛା କଲି ଓଡିଆ ସାହିତ୍ୟ ଅଧ୍ୟୟନ କଲାବେଳେ ଇତିହାସ ଜାଣିବାକୁ ପଡେ । ମତେ ଖୁବ୍ ଅଡୁଆ ଲାଗେ । ଖ୍ରୀଷ୍ଟାବ୍ଦର ଜାଲ, ଏତେ ଏଠି ଖୋଲତାଡ , ରାଜାରାଜୁଡା ଙ୍କ କଥା, ମନ୍ଦିର ମସଜିତ୍ କଥା, ଧର୍ମ କଥା, ଶିଳାଲେଖ, ତମ୍ବାପତ୍ର ସନନ୍ଦ ରୁ ଅତୀତ କୁ ଯୁକ୍ତିସଂଗତ ଭାବେ ଉପସ୍ଥାପନ କରିବା କାର୍ଯ୍ୟ ଭାରି କଷ୍ଟ ଜଣାପଡେ । ମୁଁ ଇତିହାସ ବିଭାଗର ବନ୍ଧୁ ମାନଙ୍କୁ ବି ଥଟ୍ଟା କରେ । ଐତିହାସକ ମାନେ ପୁରୁଣା ଜିନିଷ କୁ ଭାରି ଭଲ ପାଆନ୍ତି । ସାହିତ୍ୟ ପ୍ରତି ମୋର ଗୋଟେ ଦୁର୍ବଳତା ପିଲା ଦିନରୁ । ସାହିତ୍ୟ ରେ ବାସ୍ତବ ଜୀବନ ଅଛି । ଇତିହାସ ଯାହାକୁ ଅଦରକାରି ମନେ କଲି ଫିଙ୍ଗି ଦେଇଛି ସାହିତ୍ୟ ତାକୁ ପରମ ଆଦର ରେ କାନିରେ ବାନ୍ଧି ରଖିଛି । ସାହିତ୍ୟ ଲେଖା ମୋର ବହୁ ଦିନରୁ । ଗଳ୍ପ, ନାଟକ କବିତା ଲେଖା ମୋର ସମୟ ପାଇଲେ ବାହାରି ପଡେ । କେହି ପଢି ପ୍ରଶଂସା କରୁ ବା ନକରୁ , ମୁଁ ନିଜେ ପଢି ସାରି ନିଜକୁ ଧନ୍ୟବାଦ ଦେଇଦିଏ । କିନ୍ତୁ ମନ ଭିତରେ ଇତିହାସ ପ୍ରତି ଗୋଟେ ଦୁର୍ବଳତା ଆସ୍ତେ ଆସ୍ତେ ସୃଷ୍ଟି ହୋଇ ଗଲା । ଭାରତ କିମ୍ବା ଓଡିଶାର ଇତିହାସ ଜାଣିବା ପାଇଁ ଯେତେ ଆଗ୍ରହ ନହେଲା, ସେତେ ହେଲା ମୋ ଗାଁ ର, ମୋ ବଂଶର, ମୋ ଅଂଚଳର ଇତିହାସ ଜାଣିବା ପାଇଁ ।

ମୋର କର୍ମ କ୍ଷେତ୍ର ବ୍ରଜସୁନ୍ଦର ଉଚ୍ଚ ବିଦ୍ୟାଳୟ । ପୂର୍ବତନ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ବିଶ୍ୱାଳ ଇତିହାସ ଶିକ୍ଷକ, କଥା ପ୍ରସଂଗରେ ସେ ଯାଜପୁର ର ଇତିହାସ ସମ୍ବନ୍ଧରେ ଆଲୋଚନା କରୁଥାନ୍ତି ଓ ଯାଜପୁର ଉପରେ ଗୋଟେ ବହି ଲେଖିବା ପାଇଁ ଉଦ୍ୟମ କରୁଥାନ୍ତି । ମୋତେ ଗଣିତ ବିଜ୍ଞାନରୁ ସାହିତ୍ୟ ଆଡକୁ ଆଣିବା ଲୋକ ସିଏ । ପୁଣି ଅବସର ପରେ ସେ ମତେ ଇତିହାସ କଥା ବାରମ୍ବାର କହୁଥାନ୍ତି । ମୁଁ ଭାବିଲି କିଛି କରିବା । ବହି ପତ୍ର ଯୋଗାଡ ରେ ଲାଗିଲି । ଯାଜପୁର ର ପ୍ରଖ୍ୟାତ ଗବେଷକ ଡଃ. ଏକାଦଶୀ ପାଢୀଙ୍କ ବହି ପଢିଲି । ପରେ ମୁଁ ଓଡିଶାର ବିଭିନ୍ନ ଇତିହାସ ବହି ପଢି,

ଦେଖିଲି ଯାଜପୁର ର ଐତିହ୍ୟ ମତେ ବହୁ ଆଗରୁ ଜାଣିବା ଦରକାର ଥିଲା । ଖାଲି ବିରଜା, ବୈତରଣୀ ବରାହ, ବିପ୍ରା, ବେଦା ଆଦି ଠାରୁ ଅଶ୍ୱମେଧ ଯଜ୍ଞ, ଦଶାଶ୍ୱମେଧ ଘାଟ ସମ୍ବନ୍ଧରେ ଅସ୍ପଷ୍ଟ ଧାରଣା ନେଇ ମୁଁ ଠିକ୍ କରିନି । ତେଣୁ ପଢିଲି । ଯେତେ ପଢୁଥାଏ ସେତେ ଆଗ୍ରହ ବଢୁଥାଏ ଫକୀର ମୋହନ ସ୍ମୃତି ସଂସଦ ଦ୍ୱାରା ପ୍ରକାଶିତ Cultural Heritage of Jajpur ରେ ଲେଖା କିଛି ଦେଲି । ପଢା ଚାଲୁ ରଖିଥାଏ । କୃଷ୍ଣସାର ମଝିରେ ମଝିରେ ଆଗ୍ରହ ବଢାଇବା ପାଇଁ କିଛି ନୂଆତଥ୍ୟ କହୁଥାନ୍ତି । ଦୁଷ୍ପ୍ରାପ୍ୟ ପୁସ୍ତକ କିଛି ଯୋଗାଡ କରି ପଠାଇଥାନ୍ତି । ତେଣୁ ମୁଁ ଭାବିଲି ମୋ ଛାତ୍ରଛାତ୍ରୀ ମାନେ ବା ଯାଜପୁର ଅଂଚଳର ଯୁବକ ଯୁବତୀ ମାନେ ଯାଜପୁରର କୃତି ସନ୍ତାନ ମାନଙ୍କ ସମ୍ବନ୍ଧରେ କିଛି ଜାଣିପାରୁ ନାହାନ୍ତି । କାରଣ ସେମାନଙ୍କ ପାଖରେ ସେଭଳି ପୁସ୍ତକ ଟିଏ ନାହିଁ । ତେଣୁ ବିଭିନ୍ନ ପତ୍ରପତ୍ରିକା, ଇତିହାସ, ସାହିତ୍ୟ ମଧରେ ବିକ୍ଷିପ୍ତ ହୋଇ ରହିଥିବା ଯାଜପୁର ମାଟିର ଅମର ସନ୍ତାନ ସମ୍ବନ୍ଧରେ ଛୋଟ ବହିଟିଏ ଲେଖିବି । ଏଣେ ଜ୍ଞାନ ବହୁତ କମ୍ ଅଧିକ ଶ୍ରମ ପାଇଁ ସମୟ ଓ ଶକ୍ତି ବି କମ୍ । ଯାହାହେଉ ଶେଷରେ ମୁଁ ଏ ବହିଖଣ୍ଡ ଲେଖିବାକୁ ଉଦ୍ୟମ କଲି । ଏ ପୁସ୍ତକ ରେ ୧୩ ଜଣ କୃତି ସନ୍ତାନଙ୍କ ସଂକ୍ଷିପ୍ତ ପରିଚୟ ଦିଆଯାଇଛି । ଏମାନଙ୍କ ଉପରେ ଅଧିକ ଗବେଷଣା ପାଇଁ ମୁଁ ଏ ଅବସର ରେ ପଣ୍ଡିତ ମାନଙ୍କୁ ମଧ ଅନୁରୋଧ କରୁଛି । ମୁଁ ଯାହା ଲେଖିଛି ଏହା ମୋ ଅଧୟନ ପ୍ରସ୍ୱତ ଜ୍ଞାନ । ପଣ୍ଡିତ ମାନଙ୍କର ଗବେଷଣା କୁ ମୁଁ ସାଉଁଟି ଏ ବହିରେ ସଜାଇବାକୁ ଚେଷ୍ଟା କରିଛି । ଡ଼ଃ ସତ୍ୟନାରାୟଣ ରାଜଗୁରୁ, ପ୍ୟାରି ମୋହନ ଆଚାର୍ଯ୍ୟ, ବିନାୟକ ମିଶ୍ର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ହରେକୃଷ୍ଣ ମହତାବ, ଡ଼ଃ ଯଜ୍ଞ କୁମାର ସାହୁ , ଅତୁଲ ଚନ୍ଦ୍ର ପ୍ରଧାନ ଆଦି ଐତିହାସିକ ମାନଙ୍କ ଗବେଷଣା କୁ ମୁଁ ମୁଖ୍ୟ ଆଧାର କରିଛି ।

ମୁଁ ଯେଉଁମାନଙ୍କ ପାଇଁ ଏ ବହିଟି ଲେଖିଛି । ଯଦି ସେମାନେ କିଛି ଉପକୃତ ହୋଇ, ଗବେଷଣା ପାଇଁ ଆଗଭର ହୁଅନ୍ତି ତେବେ ଶ୍ରମ ସାର୍ଥକ ହେବ । ପାଣ୍ଡୁଲିପି ପ୍ରସ୍ତୁତ କ୍ଷେତ୍ରରେ ମତେ ସାହାଯ୍ୟ କରିଥିବା, ଭାଣିଜୀ ପ୍ରଜ୍ଞା ପରମିତା ସାମଲ ଙ୍କ ମଙ୍ଗଳ କାମନା କରୁଛି । ବିଶେଷ କରି ବ୍ରଜସୁନ୍ଦର ଉଚ୍ଚ ବିଦ୍ୟାଳୟ ର ଶିକ୍ଷକ ଧୀରେନ୍ଦ୍ର କୁମାର ମିଶ୍ରଙ୍କୁ ତାଙ୍କର ଉତ୍ସାହ ପାଇଁ ଧନ୍ୟବାଦ ଦେଉଛି । ଏ ପୁସ୍ତକ ପ୍ରକାଶନର ଦାୟୀତ୍ୱ ନେଇଥିବା ବଂଧୁ ମାନଙ୍କ ନିକଟ ରେ କୃତଜ୍ଞତା ଜଣାଉଛି ।

ସର୍ବଶେଷରେ ଯାଜପୁର ର ଅଧିଷ୍ଠାତ୍ରୀ ଦେବୀ ମା ବିରଜାଙ୍କ ପାଦପଦ୍ମ ରେ କୋଟି କୋଟି ନମସ୍କାର କରି ରହୁଛି । (ବିନୀତ )

ପ୍ରଫୁଲ ଚନ୍ଦ୍ର ରାୟ

# ଆମ ସଂସ୍କୃତିର ପ୍ରବାଦ ପୁରୁଷ ଯଯାତି

ଓଡିଶାର ଇତିହାସ ପାଇଁ ଯଯାତି କେଶରୀ ଯେପରି ଏକ ଅବିସମ୍ବାଦିତ ନରପତି ଓ ଭବ୍ୟ ଉତ୍କଳର ନିର୍ମାତା ଭାବେ ସର୍ବଜନାଦୃତ, ସେହିପରି ଯାଜପୁର ର ଇତିହାସ, ସଂସ୍କୃତି, ଧର୍ମ, ନିର୍ମାଣ କଳା, ଓ ଐତିହ୍ୟ ପାଇଁ ଏକ ପରମ ସ୍ମରଣୀୟ ବିଶ୍ୱସ୍ତ ଚରିତ୍ର । ଇତିହାସ ର ରଂଗ ମଧ୍ୟରେ କ୍ରମଶଃ ଅଚିହ୍ନା ହୋଇ ଯାଉଥିବା କୋଶଳ ରାଜକୁମାର ମହାଶିବଗୁପ୍ତ ଯଯାତିଙ୍କୁ ପୁଣିଥରେ ସ୍ମରଣ କରିବାର ସ୍ମରଣୀୟ ପ୍ରୟାସ ଗୌରବର ବିଷୟ ।

ଯଯାତିଙ୍କ ଜୀବନାୟନ ଆଲୋଚନା ପୂର୍ବରୁ ତତ୍କାଳୀନ ଐତିହାସିକ – ଭୂଗୋଳ ସମ୍ବନ୍ଧରେ ଗବେଷକ ମାନଙ୍କ ଆଲୋଚନା ପ୍ରଣିଧାନ ଯୋଗ୍ୟ । ତତ୍କାଳୀନ ରାଜ୍ୟମାନଙ୍କର ସୀମା ସରହଦ ବାରବାର ବଦଳୁଥିଲା ଓ ରାଜବଂଶ ମାନଙ୍କର ଉତ୍ଥାନ ପତନ ଅବିରତ ଚାଲୁ ରହିଥିଲା । ପ୍ରାଚୀନ ଗ୍ରନ୍ଥ ମାନଙ୍କରେ ଓଡିଶାର ବିଭିନ୍ନ ଅଂଚଳ ବିଭିନ୍ନ ନାମରେ ପରିଚିତ ଓ ଓଡିଶାର ସୀମା ସରହଦ ଅତି ବିସ୍ତୃତ । କଳିଙ୍ଗ, କୋଙ୍ଗଦ, ତ୍ରିକଳିଙ୍ଗ ତୋଷାଳି, ଉତ୍କଳ, ଓଡ୍ର ଆଦି ଇତିହାସ ରେ, ଆମ ରାଜ୍ୟ ବିଭିନ୍ନ ନାମରେ ନାମିତ। ଏକ ଅଂଚଳ, ଅଥଚ ବିଭିନ୍ନ ନାମ, ବିଭିନ୍ନ ସମୟରେ । କେତେବେଳେ ସଂକୁଚିତ ତ ବିସ୍ତାରିତ କେତେବେଳେ ।

କଳିଙ୍ଗ ଦେଶର ସୀମା ଗଂଗା ଠାରୁ ଗୋଦାବରୀ ଯାଏଁ ଓ କଳିଙ୍ଗର ମଧ୍ୟଭାଗରେ ବୈତରଣୀ ନଦୀ ପ୍ରବାହିତ । ସଂସ୍କୃତ ମହାଭାରତ, ବୌଦ୍ଧଗ୍ରନ୍ଥ ଲଳିତବିସ୍ତାର, ପାଣିନୀ ଙ୍କ ଅଷ୍ଟାଧ୍ୟାୟୀ, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ମେଗାସ୍ଥିନିସ୍ ଙ୍କ ବିବରଣୀ ଓ କାଳିଦାସଙ୍କ ରଘୁବଂଶ ଆଦି ଗ୍ରନ୍ଥରେ କଳିଙ୍ଗର ବର୍ଣ୍ଣନା ଦେଖିବାକୁ ମିଳେ । ଏହାର ରାଜଧାନୀ ଶ୍ରୀପୁର, ରାଜପୁର, ଦନ୍ତପୁର, ତୋଷାଳୀ କଳିଙ୍ଗ ନଗର ଆଦି । ଏକ ବୃହତ୍ତର ରାଷ୍ଟ୍ରରୂପେ ଖ୍ରୀଷ୍ଟପୂର୍ବ ଓ ପରବର୍ତ୍ତୀ ୭ଟି ଶତାବ୍ଦୀ ଯାଏଁ ଏହାର ବର୍ଣ୍ଣନା ଉପଲବ୍ଧ ।

କୋଙ୍ଗଦ ଆଧୁନିକ ପୁରୀ ଓ ଗଞ୍ଜାମର ଉତ୍ତର ଅଂଶ, ବୌଦ ଆଦି ଜିଲ୍ଲାକୁ ନେଇ ଏକ କ୍ଷୁଦ୍ରରାଜ୍ୟ । ତ୍ରିକଳିଙ୍ଗ ମଧ୍ୟ ଆଧୁନିକ ସମ୍ବଲପୁର, କୋରାପୁଟ, ବଲାଙ୍ଗୀର, କଳାହାଣ୍ଡି ର କିଛି କିଛି ଅଂଶକୁ ନେଇ ଗଠିତ ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା । କେତେକ

ଆଲୋଚକ  କଳିଙ୍ଗର ୩ଟି ବିଭିନ୍ନ ଅଂଶକୁ ତ୍ରିକଳିଙ୍ଗ କହନ୍ତି । ଉତ୍କଳ ସେହିପରି ମେଦିନପୁର, ବାଲେଶ୍ୱର ଓ କଟକ ର କିଛି ଅଂଶ କୁ ନେଇ ଏକ ସାର୍ବଭୌମ ରାଷ୍ଟ୍ର ରୂପେ ପରିଚିତ ଥିଲା । କେତେକ  ଆଲୋଚକ ମାନଙ୍କ ମତରେ ଉତ୍ତର କଳିଙ୍ଗ ହେଉଛି ଉତ୍ କଳିଙ୍ଗ ବା ଉତ୍କଳ ।

ଷଷ୍ଠ ଶତାବ୍ଦୀ ବେଳକୁ ମେଦିନପୁର ଠାରୁ ଗଞ୍ଜାମ ପର୍ଯ୍ୟନ୍ତ ଅଂଚଳକୁ ତୋଷାଳୀ ବୋଲି କୁହାଯାଉଥିଲା । ମହାନଦୀର ଉତ୍ତର ପଟକୁ ଉତ୍ତର ତୋଷାଳୀ ଓ ଦକ୍ଷିଣ ପଟକୁ ଦକ୍ଷିଣ ତୋଷାଳୀ ବୋଲି କୁହାଯାଉଥିଲା । ଷଷ୍ଠ ଶତାବ୍ଦୀ ଠାରୁ ମୁଦ୍‌ଗଲ ବଂଶ ଶାସନ କରୁଥିଲେ ଓ ଏହି ସମୃଦ୍ଧ ଅଂଚଳ କୁ ଅଷ୍ଟମ ଠାରୁ ଦଶମ ଶତାବ୍ଦୀ ଯାଏଁ ଭୌମକର ବଂଶ ଶାସନ କରୁଥିଲେ । କୋଶଳ ସେହିପରି ବିଳାସପୁର, ରାୟପୁର, ସୁନ୍ଦରଗଡ, ସମ୍ବଲପୁର ଆଦି ଅଂଚଳ କୁ ବୁଝାଉଥିଲା ।  ଏଠାରେ ସୋମବଂଶ  ଶାସନ  କରୁଥିଲେ । ଏହାର ପଶ୍ଚିମ ଅଂଶରେ କଲ୍‌ଚୁରି ହୈହୟ ବଂଶର ଶକ୍ତିଶାଳୀ ରାଜାମାନେ ଶାସନ କରୁଥିଲେ । ସେମାନଙ୍କ ଦ୍ୱାରା ବାରମ୍ବାର ପରାଜିତ ହୋଇ, ସୋମବଂଶୀ ରାଜାମାନେ ପୂର୍ବ ଉପକୂଳ ଆଡକୁ ସାମ୍ରାଜ୍ୟ ବିସ୍ତାର କରିବାକୁ ମନସ୍ଥ କରିଥିଲେ । ଉଡ୍ର ଓଡିଶାର ଏକ ସୁପ୍ରାଚୀନ ନାମ ବ୍ରହ୍ମପୁରାଣ ମତରେ ବୈତରଣୀ ଏହାର ମଧ୍ୟଭାଗରେ ପ୍ରବାହିତ ।  ପୁରୁଷୋତ୍ତମ, ଅର୍କ, ଓ ବିରଜା କ୍ଷେତ୍ର ଏହି ଦେଶରେ । ସମ୍ରାଟ ହର୍ଷବର୍ଦ୍ଧନ ଙ୍କ ସମୟରେ ଏହାର ନାମ ଉଡ୍ର ବିଷୟ । ଆରବିକ୍ ଓ ଫାର୍ସି ଭୂଗୋଳବିତ୍ ମାନେ ଭୌମବଂଶ ଶାସିତ ଓ ଏ ଅଂଚଳକୁ ଉର୍ସିନ । ଉର୍ସଫିନ୍ ନାମରେ ଲେଖିଛନ୍ତି । ଉଡ୍ର ଉର୍ଦ ବିସାଉ Urda Visau ଓଡିବିଷା, ଓଡିଶା ଦେଶ, ଯାଜନଗର ଓଡିଶା ଆଦି ନାମରେ ମୁସଲମାନ ଐତିହାସିକ ମାନେ ଏହି ଅଂଚଳକୁ ନାମିତ କରିଛନ୍ତି ।

ଐତିହାସିକ ଭୂଗୋଳ ର ସୂଚନା ଅନୁସାରେ ଆମ ଅଂଚଳ ବିଭିନ୍ନ ସମୟରେ ଉପରୋକ୍ତ ନାମ ଗ୍ରହଣ କରିଥିଲା ଓ ବିଭିନ୍ନ ସମୟରେ ସ୍ୱାଧୀନ ରାଜ୍ୟ ମାନଙ୍କର ଅବିର୍ଭାବ ଘଟୁଥିଲା । ଏ ଅଂଚଳରେ ଐତିହାସିକ,  ସଂଯୋଗ ଓ ବିଯୋଗ ଘଟୁଥିଲେ ମଧ୍ୟ ଏହା ଏକ ସମୃଦ୍ଧ ଅଂଚଳ ଥିଲା । ଆଶୋକ ଙ୍କ ସମୟ ପୂର୍ବରୁ ମଧ୍ୟ ଏହା ଏକ ସମୃଦ୍ଧ ଅଂଚଳ ଥିଲା । ଆଶୋକ ଙ୍କ  ସମୟ ରେ ଏହା ଏକ ସୁଗଠିତ ପ୍ରଦେଶ କଳିଙ୍ଗ । ଭୌମ ମାନଙ୍କ ସମୟରେ ଏହି ଅଂଚଳ ତୋଷାଳୀ ରୂପେ ଖୁବ୍ ପ୍ରସିଦ୍ଧ ଅର୍ଜ୍ଜନ କରିଥିଲା ।

ଯଯାତି କେଶରୀଙ୍କ ଜୀବନୀ, ତୋଷାଳୀ ଓ କୋଶଳ ର ଅବସ୍ଥିତି, ଧର୍ମ ମତବାଦ, ସାଂସ୍କୃତିକ ଅବସ୍ଥା, ଭୌଗୋଳିକ ପରିବେଶ, ରାଜନୈତିକ ଅବସ୍ଥା ଓ ବ୍ୟବସ୍ଥା ଆଦି ଘଟଣା ର ଅପେକ୍ଷା ରଖେ । ଖ୍ରୀ ୭୩୬ ରେ ଭୌମ ବଂଶର ପ୍ରତିଷ୍ଠାତା ପ୍ରଥମ

ଶିବଙ୍କର ଦେବ (ଉନ୍ମତ୍ତ କେଶରୀ) ଉତ୍ତର ତୋଷାଳୀ, ଦକ୍ଷିଣ ତୋଷଳୀ ଓ କୋଙ୍ଗଦର କିଛି ଅଂଶ ସାମ୍ରାଜ୍ୟଭୂକ୍ତ କରି ବୈତରଣୀ ନଦୀ କୂଳ ରେ ବିରଜା ଠାରେ ଜୟସ୍କନ୍ଧାବାର ଗୁହେଶ୍ୱର ପାଟକ / ଗୁହଦେବ ପାଟକରୁ ଶାସନ ଆରମ୍ଭ କରିଥିଲେ ଓ ଭୌମକର ବଂଶଙ୍କୁ ଏକ ସାର୍ବଭୌମ ସମ୍ରାଟବଂଶର ମର୍ଯ୍ୟାଦା ଦେଇଥିଲେ । ଅତୀତ ରେ ରାଜଧାନୀ ଶବ୍ଦ ଅର୍ଥରେ ଜୟସ୍କନ୍ଧାବାର ଶବ୍ଦ ପ୍ରଚଳିତ । ଯାହର ଅର୍ଥ ସେନାଛାଉଣୀ । ରାଜପୁରୁଷ, ଅମାତ୍ୟ, ସେନା ଓ ସେନାପତି ମାନେ ଯେଉଁଠାରେ ବାସ କରୁଥିଲେ ତାହା ଜୟସ୍କନ୍ଧାବାର ବା ଶାସନ କେନ୍ଦ୍ର ଓ ରାଜଧାନୀ । ଭୌମ ରାଜା ମାନେ ସାମରିକ ଶକ୍ତି ଓ ଦୈବୀତନ୍ତ୍ରଶକ୍ତି ରେ ବଳିୟାନ ଥିଲେ । ଭୌମବଂଶର ଆଦି ରାଜାମାନେ ମହାଜାନ ବୌଦ୍ଧ ର ପୃଷ୍ଟପୋଷକ ଥିଲେ । ଏହି ରାଜ୍ୟ ରେ ଅଳ୍ପ ସଂଖ୍ୟକ ବୈଦିକ ହିନ୍ଦୁ । ହୀନଜାନୀ ବୌଦ୍ଧ ମଧ ରହିଥିଲେ । ବ୍ରଜଜାନ ବା ତାନ୍ତ୍ରୀକ ବୌଦ୍ଧଧର୍ମ ର ବିକାଶ ଓ ପ୍ରକାଶ ଏହି ରଜାମାନଙ୍କ ଦ୍ୱାରା ହୋଇଥିଲା ସପ୍ତମ ଶତାବ୍ଦୀ ରେ ପରିବ୍ରାଜକ ହୁଏନ୍‌ସାଂଙ୍କ ବିବରଣୀରେ ତୋଷାଳୀ ରେ ୫୦ଟି ମନ୍ଦିର, ୧୦୦ ଟି ବୌଦ୍ଧ ସଂଘାରାମ, ଓ ୧୦,୦୦୦ ବୌଦ୍ଧ ଧର୍ମଯାଜକ ରହିଥିବାର ସୂଚନା ମିଳେ । ଭୌମ ରାଜାମାନେ "ପରମୋପାସକ" ପରମ ସୌଗତ, ପରମ ତଥାଗତ ସୌଗତାଶ୍ରୟ ଆଦି ବୌଦ୍ଧ ଉପାଧି ନିଜ ଅଭିଷେକ ନାମାରେ ବ୍ୟବହାର କରୁଥିଲେ କାଳକ୍ରମେ ଭୌମ ରଜାମାନେ ଉତ୍ତର, ଦକ୍ଷିଣ ଓ ପୂର୍ବ ଭାରତର ରାଜପରିବାରରେ ବିବାହ କରିଥିଲେ । ସେମାନଙ୍କ ରାଣୀ ମାନେ ସେମାନଙ୍କ ପିତ୍ରାଳୟର ରାଜଧର୍ମ, ମତେ ଶୈବ, ଶାକ୍ତ, ବିଷ୍ଣୁ ଉପାସକ ଥିଲେ । ସେମାନଙ୍କ ଜରିଆ ରେ ଏ ମହାଜାନୀ ବୌଦ୍ଧ ମାଟିର, ଧର୍ମଧାରା ରେ ଧିର ପରିବର୍ତ୍ତନ ସମ୍ଭବ ହେଲା । ସେମାନେ ବ୍ରାହ୍ମଣ ମାନଙ୍କୁ ଦାନ ଦେବା ସହିତ, ପରମ ମାହେଶ୍ୱରୀ, କାତ୍ୟାୟିନୀ, ପରମ ଭଟ୍ଟାରିକା, ପରମେଶ୍ୱରୀ, ଗୋସ୍ୱାମିନୀ ଆଦି ଅଭିଷେକ ନାମା କାରଣରୁ ଧର୍ମଧାରାର ମନ୍ଥର ପରିବର୍ତ୍ତନ ସ୍ପଷ୍ଟ । ଏକଦା ବୌଦ୍ଧ ତନ୍ତ୍ରଜାନ ର ମୁଖ୍ୟକେନ୍ଦ୍ର ଭାବେ ପ୍ରସିଦ୍ଧ ତୋଷାଳୀ ତନ୍ତ୍ରଶକ୍ତି ସହିତ ସାମରିକ ଶକ୍ତି ର ବଳିୟାନ ଥିବାରୁ ଦୀର୍ଘଦିନ ଅପରାଜୟ ହୋଇ ରହିଥିଲା ଓ ବିସ୍ତାର ଲାଭ କରୁଥିଲା । ତୋଷାଳୀ ମାଟିର ଆରାଧଦେବୀ ବିରଜା, ବିଭିନ୍ନ ସମୟରେ ବିଭିନ୍ନ ନାମ ଓ ପୂଜା ପଦ୍ଧତି ମାଧମରେ ପୂଜିତା । ଖ୍ରୀଷ୍ଟପୂର୍ବ ସମୟରୁ ଏ ଶକ୍ତିପୀଠ ର ମାହାତ୍ମ୍ୟ ବିଭିନ୍ନ ପୌରାଣିକ ଗାଥା ମାଧମରେ ବର୍ଣ୍ଣିତ । ମା ବିରଜାଙ୍କ ଅସୀମ କୃପା ଏ ମାଟିକୁ ଶତ୍ରୁଦୃଷ୍ଟି ରେ ପଡିବାକୁ ଦେଉନଥିଲା ବୋଲି ତୋଷାଳୀ ସୀମାକୁ ଲାଗିରହିଥିବା ଶତ୍ରୁରାଜା ମାନେ ଅନୁଭବ କରି ନିଷ୍କ୍ରିପ ରହୁଥିଲେ । ଭୌମ ମାନଙ୍କୁ ନିକୃଷ୍ଟ ଜାତି ଭାବେ ଆର୍ଯ୍ୟ

ଅଧ୍ୟୁଷିତ ଉତ୍ତର ଓ ପୂର୍ବ ଭାରତର ରାଜା ମାନେ ବିଚାର କରୁଥିଲେ । ସେମାନେ ନିଜର ଗୌରବ ବଢ଼ାଇବା ପାଇଁ ଶୈବ-ଶାକ୍ତ ଓ ବୈଷ୍ଣବ ମତବାଦୀ ରାଜ୍ୟରେ ବିବାହ କରିବାକୁ ଇଛା କରୁଥିଲେ । ଏହି ବୈବାହିକ ସଂପର୍କ ମଧ୍ୟଦେଇ ଗୁହଦେବ ପାଟକ ର ଆର୍ଯ୍ୟ କରଣ ପ୍ରକ୍ରିୟା ଓ ଧର୍ମର ଧୀର ପରିବର୍ତ୍ତନ ଖ୍ରୀ ୮୧୬ ରୁ ପ୍ରଥମ ଶାନ୍ତିକର ଦେବଙ୍କ ଅମଳରୁ ଆରମ୍ଭ ହୋଇଥିଲା ।  ଏହାର ଭାବି ଫଳ ସ୍ୱରୂପ ଉତ୍ତର ତୋଷାଳୀ ରେ ସୋମବଂଶ ର ପ୍ରତିଷ୍ଠା ସହ ଉତ୍ତର ତୋଷାଳୀ ର ନାମ ମଧ୍ୟ ଲୁପ୍ତ ହୋଇ ଉତ୍କଳ ହୋଇ ଯାଇଥିଲା ଏହି ସାଂସ୍କୃତିକ ପରିବର୍ତ୍ତନ ର ବହୁ ହୋତା ଓ  ଉଦ୍‌ଗାତା ମଧ୍ୟରୁ ମହାଶିବ ଗୁପ୍ତ ଯଯାତି (୧ମ) ଇତିହାସ ରେ ଅମର ହୋଇ ରହିଛନ୍ତି । ମହାଶିବଗୁପ୍ତ ପ୍ରଥମ ଯଯାତିଙ୍କ ଠାରୁ ମହାଶିବଗୁପ୍ତ ଚଣ୍ଡିହାର ଦ୍ୱିତୀୟ ଯଯାତି ଯାଏଁ ଏ ସାଂସ୍କୃତିକ ବିବର୍ତ୍ତନ ପ୍ରଲମ୍ବିତ । ଗୁହେଶ୍ୱର ପାଟକର ହଜାରରୁ ଉର୍ଦ୍ଧ୍ୱ ବର୍ଷ ର ଧର୍ମୀୟ ଚେତନା କୁ ସୋମବଂଶୀ ମାନେ ୧୦୦ ବର୍ଷ ମଧ୍ୟରେ ପରିବର୍ତ୍ତନ କରିବାକୁ ସମର୍ଥ ହେବା ଏକ ଆଶ୍ଚର୍ଯ୍ୟମୟ କଥା ନୁହେଁ ।

ଅପର ପଟେ ପାଣ୍ଡୁବଂଶୀ ବା ସୋମବଂଶୀ ମାନେ ଦକ୍ଷିଣ କୋଶଳ ରେ ଏକ କ୍ଷୁଦ୍ର ରାଜ୍ୟ ପ୍ରତିଷ୍ଠାକରି ନିଜର ସାମରିକ ଶକ୍ତି ଓ କୂଟନୈତିକ ଧୀମତ୍ତା ଯୋଗୁଁ ସାମ୍ରାଜ୍ୟ ବିସ୍ତାର ରେ ଆଗ୍ରହ ପ୍ରକାଶ କରିଥିଲେ । ରାୟପୁର ବିଳାସପୁର, ସମ୍ବଲପୁର ଓ କଳାହାଣ୍ଡି ଜିଲ୍ଲାର କ୍ଷୁଦ୍ର ଅଂଶକୁ ନେଇ ସେମାନେ ଶାସନ ଆରମ୍ଭ କରିଥିଲେ । ସେମାନେ ମୁଖ୍ୟତଃ ଶୈବଶାକ୍ତ ଓ ବୌଷ୍ଣବଧର୍ମ ର ଉପାସକ । ସେମାନେ ବ୍ରାହ୍ମଣ୍ୟ ଧର୍ମର ଚତୁଃବର୍ଣ୍ଣ ବ୍ୟବସ୍ଥାର ମଧ୍ୟ ପୂର୍ଣ୍ଣ ପୃଷ୍ଠପୋଷକ ଥିଲେ । ସେମାନଙ୍କ ରାଜକୀୟ ମୋହରରେ ବୃଷଭ ଚିହ୍ନ ଓ 'ମହାଶିବ ଗୁପ୍ତ' 'ମହାଭବଗୁପ୍ତ' ଅଭିଷେକ ନାମାରୁ ଏହା ସ୍ପଷ୍ଟ । କୋଶଳ ମୁଖ୍ୟତଃ ବିନ୍ଧ୍ୟ ପର୍ବତ ମାଳାର ପାର୍ବତୀୟ ଅଂଚଳ ଥିଲା । ବିନ୍ଧ୍ୟ ପର୍ବତମାଳା କ୍ରମଶଃ ଗଡାଣିଆ ହୋଇ ଯାଜପୁର ଠାରେ ସମତଳ ଭୂମିରେ ପରିଣତ ହୋଇ ଥିଲା । ତୋଷାଳୀ ଥିଲା ବିନ୍ଧ୍ୟ ପର୍ବତ ମାଳାର ଶସ୍ୟଶ୍ୟାମଳା ପୂର୍ଣ୍ଣ ଏକ ସୁରମ୍ୟ ଉପତ୍ୟକା । ସେମାନେ ଏହି ସମୟରେ ପଶ୍ଚିମ ର ଶକ୍ତିଶାଳୀ କଳଚୁରୀ ବଂଶ ର ରାଜା ମାନଙ୍କ ଦ୍ୱାରା ଲାଞ୍ଛିତ ହେଉଥିଲେ । ତେଣୁ ତୋଷାଳୀ  ଉପରେ ସେମାନଙ୍କର ଲୋଲୁପ ଦୃଷ୍ଟି ରହିବା ସ୍ୱାଭାବିକ । କିନ୍ତୁ ସୁସଂଗଠିତ ତୋଷାଳୀ କୁ ବାହୁବଳରେ ଅଧିକାର କରିବା ସମ୍ଭବ ନୁହେଁ । ସୋମବଂଶ ର ଜଣେ ଶକ୍ତିଶାଳୀ ନରପତି ମହାଭବ ଗୁପ୍ତ ପ୍ରଥମ ଜନ୍ମେଜୟ (୮୫୦-୮୮୫ ଖ୍ରୀ) ନିଜର ଅସାଧାରଣ କୂଟନୀତି ପ୍ରୟୋଗ କରିବାକୁ ସର୍ବପ୍ରଥମ ଉଦ୍ୟମ କରିଥିଲେ । ସେ

ତୋଷାଳୀ ସହିତ ବୈବାହିକ ସମ୍ପର୍କ ମାଧ୍ୟମରେ ମିତ୍ରତା ଆରମ୍ଭ କରି ଭୌମ ମାନଙ୍କ ସହାୟତା ରେ କୋଦଳକ ମଣ୍ଡଳର ଶୁଲ୍କୀ ରାଜବଂଶକୁ ଓ ନିଜେ ଖିଞ୍ଜାଳୀ ମଣ୍ଡଳ ର ଭଞ୍ଜ ରାଜବଂଶ କୁ କରାୟତ କରିଥିଲେ । ପ୍ରକାଶ ଥାଉକି କୋଦଳକ ମଣ୍ଡଳ ଓ ଖିଞ୍ଜାଳି ମଣ୍ଡଳ ଦ୍ୱୟର ସାମନ୍ତ ରାଜା ମାନେ କ୍ରମଶଃ ଶକ୍ତିଶାଳୀ ହୋଇ ଉଠୁଥିଲେ ଓ ଉକ୍ତ କରଦ ରାଜ୍ୟ ଦ୍ୱୟ କୋଶଳ ଓ ତୋଷାଳୀ ର ମଧ୍ୟବର୍ତ୍ତୀ ଅଂଶଥିଲା । ତାଙ୍କ କୂଟନୀତି ବଳରେ ଭୌମ ରାଜା ୪ର୍ଥ ଶୁଭାକର ଦେବ ଜନ୍ମେଜୟଙ୍କ କନ୍ୟା ପୃଥ୍ୱୀ ମହାଦେବୀଙ୍କୁ ବିବାହ କରିଥିଲେ । ଏହା ଏକ ସୁପରିକଳ୍ପିତ ରାଜନୈତିକ ଷଡଯନ୍ତ୍ର ଥିଲା । ସୋମବଂଶୀ ମାନଙ୍କର ତୋଷାଳୀ ଅଧିକାର କରିବାର ସର୍ବପ୍ରଥମ ପ୍ରୟାସ ଭାବେ ଏ ବିବାହକୁ ବିଚାର କରାଯାଇପାରେ । ତୋଷାଳୀ ର ରାଜଧର୍ମ ମହାଜାନୀ ବୌଦ୍ଧ ଧର୍ମ ଉପରେ ଅତୀତ ରୁ ଚାଲିଆସିଥିବା ବିଲୋପ ପ୍ରକ୍ରିୟା, ପୃଥ୍ୱୀ ମହାଦେବୀଙ୍କ ସମୟରେ ଅଧିକ ବେଗମାନ ହୋଇ ତୋଷାଳୀ ରେ ବ୍ରାହ୍ମଣ୍ୟ ଧର୍ମ ର ଅଭ୍ୟୁତ୍ଥାନ ର କାରଣ ହୋଇଥିଲା । ୪ର୍ଥ ଶୁଭାକର ଦେବ ଅପୁତ୍ରିକ ହୋଇ ଦେହତ୍ୟାଗ କଲେ । ତାଙ୍କ ପରେ ତାଙ୍କ କନିଷ୍ଠ ଭ୍ରାତା ୩ୟ ଶିବଙ୍କର ଦେବ ସିଂହାସନ ଆରୋହଣ କଲେ । କିନ୍ତୁ କୋଶଳ ର ପୂର୍ବକଳ୍ପିତ ଷଡଯନ୍ତ୍ର ବଳରେ ପୃଥ୍ୱୀ ମହାଦେବୀ ସିଂହାସନ ପାଇଁ ଦାବୀ କଲେ । କୋଶଳ ରାଜା ଓ ତାଙ୍କ ପିତା ମହାଭବ ଗୁପ୍ତ ଜନ୍ମେଜୟଙ୍କୁ ତାଙ୍କ କନ୍ୟା ପୃଥ୍ୱୀ ମହାଦେବୀ ସପକ୍ଷରେ ଯୁଦ୍ଧ କରିବାକୁ ପଡିଥିଲା । ଏହି ଯୁଦ୍ଧରେ ୩ୟ ଶିବକର ଦେବଙ୍କୁ ସେ ହତ୍ୟା କରିଥିଲେ ବୋଲି କେତେକ ଐତିହାସିକ ମତ ଦେଲାବେଳେ ଅନ୍ୟ କେତେକ ଅକାଳ ବିୟୋଗ ବୋଲି କହିଥାନ୍ତି । ସେ ଯାହାହେଉ ସୋମବଂଶୀ ମାନେ ସଫଳ ହେଲେ ଓ କୋଶଳ କନ୍ୟା ପୃଥ୍ୱୀ ମହାଦେବୀ ଗୁହେଶ୍ୱର ପାଟକ ର ସିଂହାସନ ଲାଭ କଲେ । ସେ କିନ୍ତୁ ତୋଷାଳୀ ଅପେକ୍ଷା ନିଜର ପିତୃବଂଶ ପ୍ରତି ଅତ୍ୟନ୍ତ ଅନୁରକ୍ତା ଥିଲେ । ଭୌମକର ବଂଶର ରାଣୀ ସୋମବଂଶୀ ମାନଙ୍କ କ୍ରୀଡାପୁତ୍ତଳିକା । ସେ ସମୟରେ ତାଙ୍କ ଭାଇ ମହାଶିବ ଗୁପ୍ତ ପ୍ରଥମ ଯଯାତି (୮୮୫-୯୨୫ ଖ୍ରୀ) କୋଶଳରେ ମହାରାଜା ଓ ତୋଷାଳୀ ଶାସନର ମୁଖ୍ୟ ନେପଥ୍ୟ ନାୟକ । ସେ ପର୍ଯ୍ୟନ୍ତ ତୋଷାଳୀ ସ୍ୱାଧୀନ । ଉଭୟ ରାଜ୍ୟ ର ମିଶ୍ରଣ, ପରିକଳ୍ପନା ଭାଇ-ଭଉଣୀଙ୍କ ମଧ୍ୟରେ ଲୋକଲୋଚନ ଅଗୋଚର ରେ ଚାଲିଥାଏ । ତାର ଗୋଟିଏ ଉଦାହରଣ ସ୍ୱରୂପ ୧ମ ଯଯାତିଙ୍କ ଦ୍ୱାରା ୮୯୪ ଖ୍ରୀ ରେ ଦକ୍ଷିଣ ତୋଷାଳୀ ର ଚାନ୍ଦ୍ରଗ୍ରାମ ଉତ୍ତରଦେଶର ଶଂଖପାଣି ନାମକ ବ୍ରାହ୍ମଣଙ୍କ ଦାନପତ୍ର କୁ ବିଚାର କରାଯାଏ । କେଉଁ ଅଧିକାର ରେ ୧ମ ଯଯାତି ତୋଷାଳୀ ରାଜ୍ୟର ଏକ ଗ୍ରାମ ଦାନ କରିପାରିଲେ

ସମ୍ଭବତଃ ନିଜ ଭଗ୍ନୀ ଙ୍କୁ ସେ ନାମକୁ ମାତ୍ର ରାଣୀ କରାଇ, ଗୁପ୍ତ ରେ ତୋଷାଳୀ ଓ କୋଶଳ ର ମିଶ୍ରଣ ଯୋଜନା କରୁଥିଲେ । କିନ୍ତୁ ସେ ଅଧିକ ସମୟ ଦେଇପାରିଲେ ନାହିଁ । ପ୍ରଥମ ଯଯାତି କୋଶଳର ରାଜଧାନୀ ସୁବର୍ଣ୍ଣପୁର ରୁ ବିନୀତପୁର କୁ ସ୍ଥାନାନ୍ତରିତ କରିବା କାର୍ଯ୍ୟ ସହ ପଶ୍ଚିମ ପଟରେ କଲଚୁରୀ ମାନଙ୍କ ଆକ୍ରମଣ କୁ ପ୍ରତିହତ କରିବା ପାଇଁ ବ୍ୟସ୍ତ ରହିଥିଲେ ଏହି ଅବସର ରେ ତୋଷାଳୀ ସାମନ୍ତଙ୍କ ଦୀର୍ଘ ଦିନ ର ଅସନ୍ତୋଷ ବିଦ୍ରୋହର ରୂପ ନେଇଥିଲା । ପୃଥ୍ୱୀ ମହାଦେବୀଙ୍କୁ ସାହଯ୍ୟ କରିବାକୁ ତାଙ୍କ ଭାଇ ଯଯାତି ଅନୁପସ୍ଥିତ । ସାମନ୍ତମାନେ ବିଦ୍ରୋହ କରି ସେମାନଙ୍କ ଧର୍ମମତ ଓ ଶାସନତନ୍ତ୍ର ଉପରେ ଅନଧିକାର ହସ୍ତକ୍ଷେପ କୁ ସୁଯୋଗ ଦେଉଥିବା ପୃଥ୍ୱୀ ମହାଦେବୀକୁ ଗାଦିଚ୍ୟୁତ କଲେ । ସେମାନେ ୩ୟ ଶିବକର ଦେବଙ୍କ ବିଧବା ରାଣୀଙ୍କୁ ଗାଦିରେ ବସାଇଲେ । ନିଜକୁ ୨ୟ ତ୍ରିଭୁବନ ଦେବୀ ଭାବେ ନାମିତ କରି ପୃଥ୍ୱୀ ମହାଦେବୀଙ୍କ ୩ ବର୍ଷର ସ୍ୱଳ୍ପ ଶାସନ କାଳର ପରିସମାପ୍ତି ଘଟିଲା । ଯଯାତି ଶତ୍ରୁ ଦମନ କରି ଆଉ ତୋଷାଳୀ ରାଜାନୀତିରେ ହସ୍ତକ୍ଷେପ କରିନଥିଲେ । କାରଣ ପଶ୍ଚିମ ଓ ଉତ୍ତର ପଟରେ ସେ ବହୁ ଶତ୍ରୁମାନଙ୍କୁ ଘେରରେ ଥିଲେ । ସେ ବରଂ ନିଜର ସୁରକ୍ଷା ଦୃଷ୍ଟିରୁ ବିନୀତପୁର ରୁ ରାଜଧାନୀ ମହାନଦୀ କୂଳ ଯଯାତି ନଗର କୁ ସ୍ଥାନାନ୍ତରିତ କଲେ । ସେହି ଦିନ ଠାରୁ ଯଯାତିନଗର ସୋମବଂଶୀ ମାନଙ୍କର ରାଜଧାନୀ ର ମାନ୍ୟତା ଲାଭକଲା । ପ୍ରଥମ ଯଯାତି ଯଦି ଓ ତାଙ୍କ ପିତାଙ୍କ ପରି ସୋମବଂଶୀ ଶାସନ ଓ ସାମ୍ରାଜ୍ୟକୁ ବିସ୍ତାର କରି ପାରିଲେ ନାହିଁ କିନ୍ତୁ ସେ ପୂର୍ବ ଓ ପଶ୍ଚିମ ଓଡିଶା ମଧ୍ୟରେ ସାଂସ୍କୃତିକ ବିନିମୟର ବାର୍ତ୍ତାବହ ଥିଲେ । ପୃଥ୍ୱୀ ମହାଦେବୀ ସିଂହାସନ ଚ୍ୟୁତା ହୋଇ ଅବଶିଷ୍ଟ ଜୀବନ ଯଯାତି ନଗର (ସୋନପୁର) ଠାରେ ଅବସ୍ଥାନ କରୁଥିଲେ ଓ ସୋମବଂଶୀ- ଭୌମବଂଶୀ ମାନଙ୍କର ମୈତ୍ରୀ କ୍ରମଶଃ ଶତ୍ରୁତାରେ ପରିଣତ ହେଉଥିଲା । ଯଯାତି ନଗର ର ରାଜଉଆସ ରୁ ଗୁହେଶ୍ୱର ପଟକ ସିଂହାସନ ପ୍ରତି ସାମରିକ, ଧାର୍ମିକ, ରାଜନୈତିକ ଓ କୂଟନୈତିକ କ୍ଷେପଣାସ୍ତ୍ର ମାନ ନିକ୍ଷିପ୍ତ ହେଉଥିଲା । ପୃଥ୍ୱୀ ମହାଦେବୀଙ୍କ ସମୟରେ ଯେଉଁ ଧାର୍ମିକ ଅବକ୍ଷୟ ତୋଷାଳୀ ରାଜ୍ୟରେ ଆରମ୍ଭ ହୋଇଯାଇଥିଲା । ତାହାକୁ ପରବର୍ତ୍ତି ୪ ଜଣ ଭୌମ ରାଣୀ ଯଥା-୩ୟ ତ୍ରିଭୁବନ ଦେବୀ, ଦଣ୍ଡୀ ମହାରାଣୀ, ଗୌରୀ ମହାରାଣୀ, ଧର୍ମା ମହାରାଣୀଙ୍କ ଦ୍ୱାରା ଭରଣା ହୋଇପାରି ନଥିଲା । ଶେଷରେ ସମ୍ଭବତଃ ୯୨୫-୯୬୦ ଖ୍ରୀଷ୍ଟାବ୍ଦରେ ସୋମବଂଶୀ ରାଜା ଭୀମରଥଙ୍କ ଦ୍ୱାରା ତୋଷାଳୀ ତାର ସର୍ବଭୌମତ୍ୱ ହରାଇ କୋଶଳୋତ୍କଳ ରେ ପରିଣତ ହୋଇଥିଲା । ରାଣୀ ମାନଙ୍କର ଅକାଳମୃତ୍ୟୁ ରାଜାମାନଙ୍କର ଅଳ୍ପାୟୁ ଆଦିକୁ ଅନୁଧ୍ୟାନ କଲେ, ଏହା ରାଜଉଆସ ର

ଷଡଯନ୍ତ୍ର ପରି ମନେହୁଏ । କିନ୍ତୁ ଏ ଷଡଯନ୍ତ୍ର କେଉଁଥି ପାଇଁ? ପୃଥ୍ୱୀ ମହାଦେବୀ ଭୌମକର ବଂଶ ର ଏକ ମାତ୍ର ସିଂହାସନ ଚ୍ୟୁତ ରାଣୀ କେଉଁ ଅପରାଧ ରେ ? ଏହା ପଛରେ ଜନ୍ମେଜୟ ନନ୍ଦନ ବିଚକ୍ଷଣ କୂଟନୈତିକ ମହାଶିବ ଗୁପ୍ତ ପ୍ରଥମ ଯଯାତିଙ୍କ ଅବଦାନ ଆଲୋଚ୍ୟ ।

ଭୌମବଂଶ ର ପ୍ରତିଷ୍ଠାତା ଉନ୍ମତ୍ତ କେଶରୀ (୭୩୬-୭୮୦) ଜଣେ ବୌଦ୍ଧଥିଲେ । ତାଙ୍କ ରାଣୀ ଥିଲେ ରାଢ଼/ବଂଗ ନରପତିଙ୍କ କନ୍ୟା ଜୟବଲ୍ଲୀଦେବୀ । ପ୍ରଥମ ଶୁଭାକର ଦେବ ବୌଦ୍ଧ ଥିଲେ ଓ ତାଙ୍କ ରାଣୀ ମାଧବୀ ଦେବୀ ଶିବୋପାଶକ ଥିଲେ ସେ ମାଧବେଶ୍ୱର ଶିବ ମନ୍ଦିର ନିର୍ମାଣ କରିଥିଲେ । ଦ୍ୱିତୀୟ ଶିବକର ଦେବଙ୍କ ରାଣୀ ମୋହିନୀ ଦେବୀ ଭୁବନେଶ୍ୱର ରେ ମୋହିନୀ ମନ୍ଦିର ନିର୍ମାଣ କରିବା ବିଶ୍ୱାସ କରାଯାଏ । ପ୍ରଥମ ଶାନ୍ତିକର ଦେବ (୮୨୦-୮୩୫ଖ୍ରୀ) ନାଗବଂଶୀୟ ଗଙ୍ଗବଂଶୀୟ ତ୍ରିଭୁବନ ମହାଦେବୀ (ଗୋସ୍ୱମିନୀ)ଙ୍କୁ ବିବାହ କରିଥିଲେ । କଳିଙ୍ଗର ଗଂଗବଂଶ କନ୍ୟା ଗୋସ୍ୱାମିନୀ ବୈଷ୍ଣବୀ ଥିଲେ ଓ ବର୍ଣ୍ଣାଶ୍ରମ ଧର୍ମର ପ୍ରତିଷ୍ଠା ପାଇଁ ଆଗ୍ରହୀ ଥିଲେ । ଦ୍ୱିତୀୟ ଶାନ୍ତିକର ଦେବ ଙ୍କ ରାଣୀ ହୀରା ମହାଦେବୀ ବୈଷ୍ଣବୀ ଥିଲେ । ୪ର୍ଥ ଶୁଭାକର ଦେବଙ୍କ ରାଣୀ କୋଶଳ ରାଜକୁମାରୀ ପୃଥ୍ୱୀ ମହାଦେବୀ ପରମ ବୈଷ୍ଣବୀ ଥିଲେ ମଧ୍ୟ ମହେଶ୍ୱର-ଶିବଙ୍କ ଉଦ୍ଦେଶ୍ୟରେ ଗ୍ରାମ ଦାନ କରି ନିଜର ଉଦାରତା ପ୍ରକଟ କରିଥିଲେ । ଶୈବ- ଶାକ୍ତ - ଓ ବୈଷ୍ଣବ ଧର୍ମର ସମନ୍ୱୟ ତାଙ୍କ ସମୟରେ ହେଲା ।

ଉପରୋକ୍ତ ଆଲୋଚନା ରୁ ଏହା ସ୍ପଷ୍ଟ ଯେ ଭୌମକର ବଂଶୀୟ ରାଜା ମାନେ ବୌଦ୍ଧ ଥିଲେ ଓ ରାଣୀ ମାନେ ଆର୍ଯ୍ୟକୂଳ ସମ୍ଭୁତା ଶୈବ-ଶାକ୍ତ ବା ବୈଷ୍ଣବୀ ଥିଲେ । ଏହି ଆର୍ଯ୍ୟ ଧର୍ମ ଧିରେ ଧିରେ ତୋଷାଳୀ ମାଟିରେ ଦାନା ବାନ୍ଧିବାକୁ ଆରମ୍ଭ କରିଥିବା ଯଯାତି କେଶରୀଙ୍କ ଭଗ୍ନୀ ପୃଥ୍ୱୀ ମହାଦେବୀ ନିଜ ପିତୃକୂଳର ସାମରିକ ସାହସ ଓ ଯଯାତିଙ୍କ ପ୍ରତ୍ୟକ୍ଷ ପ୍ରେରଣା ଫଳରେ ତୋଷାଳୀ ମାଟିରେ ବ୍ରାହ୍ମଣ୍ୟ ଧର୍ମ ପ୍ରତିଷ୍ଠା ପାଇଁ ଉଦ୍ୟମ କରିଥିଲେ । ବ୍ରାହ୍ମଣ ଧର୍ମ କୁ ରାଜଧର୍ମ କରିବା ପାଇଁ ଉଦ୍ୟମ କରିବା ସହିତ ତାନ୍ତ୍ରୀକ ବୌଦ୍ଧ ସଂସ୍କୃତି ର ଉଚ୍ଛେଦ ପାଇଁ ରାଜଦଣ୍ଡ ବି ପ୍ରୟୋଗ କରିଥିବେ । ସୋମବଂଶୀ ପରଂପରା ଅନୁସାରେ ଚତୁଃବର୍ଣ୍ଣ ବ୍ୟବସ୍ଥା ଓ ବ୍ରାହ୍ମଣ ମାନଙ୍କୁ ସମାଜରେ ଉଚ୍ଚସ୍ଥାନ ଦେବା ପାଇଁ ନିଶ୍ଚିତ ପଦକ୍ଷେପ ମାନ ନେଇଥିବେ । ସେ ଏଥିପାଇଁ ବର୍ଣ୍ଣାଶ୍ରମ ଧର୍ମର ପ୍ରଚାରକ ବ୍ରାହ୍ମଣ ମାନଙ୍କୁ ମଧ୍ୟ ଓ ଉତ୍ତର ଭାରତ ରୁ ଅଣାଇ ବୌଦ୍ଧ ଅଧ୍ୟୁଷିତ ଅଂଚଳ ରେ ବସତି ପ୍ରଦାନ କରିଥିଲେ । ଅନୁମାନ କରାଯାଇପାରେ ଯେ ସେହି ସମୟରୁ ଯଯାତି ନିଜ ଭଗ୍ନୀଙ୍କୁ ପ୍ରଭାବିତ କରି ୧୦ ହଜାର ଯାଜ୍ଞିକ ବ୍ରାହ୍ମଣ କାନ୍ୟକୁବ୍ଜ ରୁ ଅଣାଇ, ଯଜ୍ଞାଦି

ଆର୍ଯ୍ୟ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲେ । ସେମାନଙ୍କୁ କ୍ରମାଗତ ଭାବେ ଆଣିବା, ସ୍ଥାୟୀ ବସତି ପ୍ରଦାନ କରିବା ଏକ ଦୀର୍ଘ ଦିନର କାର୍ଯ୍ୟ । ଏହି କାର୍ଯ୍ୟ ପାଇଁ ବୋଧେ ପୃଥ୍ୱୀ ମହାଦେବୀ ତୋଷାଳୀର ବୌଦ୍ଧ ରାଜକର୍ମଚାରୀ ଓ ସାମନ୍ତ ମାନଙ୍କ ଦ୍ୱେଷ ର କାରଣ ହୋଇଥିଲେ । ଏତେ ଶୀଘ୍ର ତୋଷାଳୀ ର ଜନସାଧାରଣ ଏହି ସାଂସ୍କୃତିକ ପରିବର୍ତ୍ତନ କୁ ଗ୍ରହଣ କରି ପାରୁନଥିବେ । ସେମାନଙ୍କ ରକ୍ଷଣଶୀଳ ମନୋଭାବ ଯଯାତିଙ୍କ ଅନୁପସ୍ଥିତ ରେ ବିଦ୍ରୋହର ରୂପ ନେଇଥିଲା ଓ ଫଳତଃ ପୃଥ୍ୱୀ ମହାରାଣୀଙ୍କୁ ସିଂହାସନଚ୍ୟୁତ ହେବାକୁ ପଡିଥିଲା । ଯଯାତି ମଧ୍ୟ ସେ ସମୟରେ ଦକ୍ଷିଣ ତୋଷାଳୀ ର ଚାନ୍ଦ୍ରଗ୍ରାମ ବ୍ରାହ୍ମଣଙ୍କୁ ଦାନ କରିବାକୁ ସୁଯୋଗ ପାଇଥିଲେ । ରାଜଧର୍ମ, ରାଷ୍ଟ୍ରଧର୍ମ ହେବ,କି ପ୍ରଜାଧର୍ମ, ରାଜଧର୍ମ ହେବ, ବୋଧେ ଏ ବିବାଦ ର ମୁଖ୍ୟ କାରଣ । ଇତିହାସ ର ଏ ସୂଚନା ଯାଜପୁର ମାଟିରେ ସେଦିନ ଅନୁଷ୍ଠିତ ହେଉଥିବା ସାଂସ୍କୃତିକ ବିବର୍ତ୍ତନ ର ସୂଚନା ଦିଏ ।

ସେ ଦିନ କଣ ତୋଷାଳୀ ବୌଦ୍ଧ ରାଷ୍ଟ୍ର ଥିଲା ? ସେଠାରେ ଯଦିଓ ମହାଯାନୀ ତାନ୍ତ୍ରୀକ ବୌଦ୍ଧ ଧର୍ମର ପ୍ରାଧାନ୍ୟ ଥିଲା କିନ୍ତୁ ବହୁ ସଂଖ୍ୟାରେ ହୀନଯାନ ବୌଦ୍ଧ, ହିନ୍ଦୁ, ବ୍ରାହ୍ମଣ ବସବାସ କରୁଥିବାର ପ୍ରମାଣ ହୁଏନସାଂ ବିବରଣୀ ରୁ ମିଳେ । ତେବେ କନୌଜରୁ ଆସିଥିବା ବ୍ରାହ୍ମଣଙ୍କ ସମୟ ନିରୂପଣ ସମ୍ବନ୍ଧ ରେ ଐତିହାସିକ ମାନେ ବିଭିନ୍ନ ଯୁକ୍ତି ଦେଖାନ୍ତି ।

ଡଃ ଯକ୍ଷ କୁମାର ସାହୁଙ୍କ ମତରେ ଦ୍ୱିତୀୟ ଯଯାତି ମହାଶିବଗୁପ୍ତ ଚଣ୍ଡୀହାର ଯଯାତି (୧୦୨୪-୧୦୪୦ଖ୍ରୀ) ଜଣେ ଧାର୍ମିକ ରାଜାଥିଲେ ଓ ଅନ୍ୟମାନଙ୍କୁ ଧର୍ମ କାର୍ଯ୍ୟରେ ପ୍ରବର୍ତ୍ତାଉଥିଲେ । ତାଙ୍କ ନୂତନ ରାଜଧାନୀ ଯଯାତିପୁର ଅଧୁନା ଯାଜପୁର ଠାରେ ଦଶାଶ୍ୱମେଧ ଯଜ୍ଞ କରିବାକୁ କାନ୍ୟକୁବଜ ରୁ ୧୦ ହଜାର ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରି ଆଣିଥିଲେ । ତାଙ୍କ ଇଷ୍ଟ ଦେବୀ ଥିଲେ ପଞ୍ଚାମ୍ବରୀ ଭଦ୍ରାମ୍ବିକା ପାର୍ବତୀ । ସେ ଲିଙ୍ଗରାଜ ମନ୍ଦିର ର ଶିଳାନ୍ୟାସ କରି ମନ୍ଦିର ନିର୍ମାଣ ଆରମ୍ଭ କରିଥିଲେ ଅନ୍ୟ କେତେଜଣ ଐତିହାସିକ ମାନଙ୍କ ମତରେ ପ୍ରଥମ ଯଯାତି (୮୮୫ - ୯୨୫) ତାଙ୍କ ଭଗ୍ନୀ ଗୁହେଶ୍ୱର ପାଟଙ୍କର ସାମ୍ରାଜ୍ଞୀ ପୃଥ୍ୱୀ ମହାଦେବୀ ଙ୍କ ସମୟରେ ଶାସନ କ୍ଷେତ୍ର ରେ ଆଧିପତ୍ୟ ବିସ୍ତାର କରିଥିଲେ ଓ ୧୦ ହଜାର ଯଜ୍ଞନିପୁଣ ବ୍ରାହ୍ମଣ ଅଣାଇ ଦଶାଶ୍ୱମେଧ ଯଜ୍ଞ କରିଥିଲେ । ସୋମବଂଶୀ ମାନେ ରାଜନୈତିକ ବିଜୟ ପାଇବା ପୂର୍ବରୁ ପ୍ରଥମ ଯଯାତି ଙ୍କ ମାଧ୍ୟମ ରେ ସୋମବଂଶୀ ମାନେ ଧାର୍ମିକ ବିଜୟ ପାଇଥିଲେ । ପ୍ରଥମ ଯଯାତିଙ୍କ ଯୋଗୁଁ ତୋଷାଳୀ ରେ ବ୍ରାହ୍ମଣୀ ଧର୍ମର ପ୍ରାଧାନ୍ୟ ବୃଦ୍ଧି ପାଇଥିଲା ଡଃ ଅତୁଲ ଚନ୍ଦ୍ର ପ୍ରଧାନ ଯଦିଓ ପ୍ରଥମ ଯଯାତିଙ୍କୁ ଦଶାଶ୍ୱମେଧ ଯଜ୍ଞର ଆୟୋଜକ ର ଗୌରବ ଦେଇଛନ୍ତି କିନ୍ତୁ ଶେଷରେ

ପ୍ରଥମ ଓ ଦ୍ୱିତୀୟ ଯଯାତିଙ୍କ ମଧ୍ୟରୁ କିଏ ଦଶାଶ୍ୱମେଧ ଯଜ୍ଞ କରିଥିଲେ ତାହା ଏକ ବିବାଦମାନ ବିଷୟ ବୋଲି ମତ ଦେଇଛନ୍ତି । ଜନଶ୍ରୁତି ଓ କିମ୍ବଦନ୍ତୀ କୁ ଐତିହାସିକ ସ୍ୱୀକୃତି ମିଳିବା ଏକ କଷ୍ଟକର ସାଧନା ।

ଇତିହାସ ରୁ ଏ କଥା ସ୍ପଷ୍ଟ ଯେ ତୋଷାଳୀ ଧର୍ମଧାରା ରେ ବ୍ୟାପକ ପରିବର୍ତ୍ତନ ପାଇଁ ୧ମ ଯଯାତିଙ୍କ ବିଶେଷ ଭୂମିକା ଥିଲା । ଦଶମ ଶତକ ର ପ୍ରଥମାର୍ଦ୍ଧ ରେ ଭୌମକର ମାନେ କ୍ରମଶଃ ଗୃହବିବାଦ ଫଳରେ ଦୁର୍ବଳ ହୋଇଗଲେ, ଯଥାକ୍ରମେ ୪ ଜଣ ଭୌମରାଣୀଙ୍କ ଅଳ୍ପସମୟ ର ଶାସନ କାଳରୁ ଗୃହବିବାଦ ର ସୁଚନା ମିଳେ । ବ୍ରାହ୍ମଣ୍ୟ ଧର୍ମ ର ସଂସ୍ଥାପନ ପାଇଁ ପ୍ରଥମ ଯଯାତି କରିଥିବା ଉଦ୍ୟମକୁ ଗତିଶୀଳ କରିଥିଲେ ତାଙ୍କ ପୁତ୍ର ଭୀମରଥ । ଭୌମ ଦୁର୍ବଳ ଶାସନ ଓ ଗୃହବିବାଦର ସୁଯୋଗ ନେଇ ସମ୍ଭବତଃ ତାଙ୍କ ସମୟ (୦୯୨୫-୯୬୦ ଖ୍ରୀ) ମଧ୍ୟରେ ସେ ଗୁହେଶ୍ୱର ପାଟକ ଅଧିକାର କରିଥିଲେ । ତାଙ୍କ ପରେ ଧର୍ମରଥ, ନହୁଷ ଆଦି ସୋମବଂଶୀ ରାଜାମାନେ ରାଜ୍ୟ ବିସ୍ତାର ଲକ୍ଷ୍ୟ ନେଇ ଶାସନ ପରିଚାଳନା କରୁଥିଲେ । ପ୍ରଥମ ଯଯାତିଙ୍କ ପରି ସାଂସ୍କୃତିକ ବିବର୍ତ୍ତନ ବା ସ୍ୱଧର୍ମ ପ୍ରସାର ଆଦି କାର୍ଯ୍ୟର ନଜିର ନାହିଁ । ସୋମବଂଶୀ ରାଜା ନହୁଷ ଯଯାତି ନଗର (ସୋନପୁର) ଠାରେ ସିଂହାସନ ଆରୋହଣ କଲା ପରେ ତାଙ୍କ ବୈମାତୃକ ଭାଇ ଇନ୍ଦ୍ରରଥ ଗୃହବିବାଦ ଆରମ୍ଭ କଲେ, ଏ ଗୃହଯୁଦ୍ଧ ରେ ନହୁଷ ଓ ତାଙ୍କ ପିତୃବ୍ୟ ଅଭିମନ୍ୟୁ ନିହତ ହେଲେ ଓ ସେମାନଙ୍କୁ ସମର୍ଥନ ହେଉଥିବା ଅଭିମନ୍ୟୁଙ୍କ ପୁତ୍ର ରାଜକୁମାର ଚଣ୍ଡିହାର ଯଯାତି ପଳାୟନ କରି ଦକ୍ଷିଣ ଭାରତର ଚୋଳ ସେନାବାହିନୀ ରେ ଯୋଗ ଦେଲେ । ଚଣ୍ଡିହାର ଯଯାତି ଥିଲେ ଅଭିମନ୍ୟୁଙ୍କ ପୁତ୍ର ଓ ସୋମବଂଶ ପ୍ରତିଷ୍ଠାତା ଜନ୍ମେଜୟଙ୍କ ପ୍ରପୌତ୍ର । ଇନ୍ଦ୍ରରଥ ପରେ ଚୋଳ ମାନଙ୍କ ଦ୍ୱାରା ପରାଜିତ ହେଲେ ଓ ପ୍ରଥମ ଯଯାତିଙ୍କ ପ୍ରତିଷ୍ଠିତ ସୋମବଂଶୀ ରାଜଧାନୀ ଯଯାତିନଗର ବିଧ୍ୱଂସ ହେଲା କୋଶଳ ର ଗୌରବ ଲୋପ ପାଇଲା । ଦୀର୍ଘ ୨୩ ବର୍ଷର ସାମରିକ ଓ ପ୍ରଶାସନିକ ଅଭିଜ୍ଞତା ଲାଭ କରି ଚଣ୍ଡିହାର ଯଯାତି ପୁଣିଥରେ କୋଶଳ ର ଶାସନ ହାତକୁ ନେଲେ । କୋଶଳ ସେତେବେଳକୁ ପ୍ରଭାବଶୂନ୍ୟ ସାମରିକ ମହତ୍ତ୍ୱ, ଗମନାଗମନ, ଜଳପଥ, ରାଷ୍ଟ୍ରୀୟ ରାଜମାର୍ଗ, ସ୍ୱାସ୍ଥ୍ୟପ୍ରଦ ଜଳବାୟୁ ଆଧାତ୍ମିକ ପରିକେନ୍ଦ୍ର ବିରଜା କ୍ଷେତ୍ରରେ ବୈତରଣୀ କୂଳରେ ଚଣ୍ଡିହାର ଯଯାତି ରାଜଧାନୀ ପ୍ରତିଷ୍ଠା କଲେ । ରାଜଧାନୀ ର ନାମ ଯଯାତିପୁର ରଖିଲେ । ବଉଦର ଯଯାତି ନଗର ଓ ବୈତରଣୀ କୂଳ ଯଯାତିପୂର ପ୍ରତିଷ୍ଠା, ଯଥାକ୍ରମେ ୧ମ ଓ ୨ୟ ଯଯାତିଙ୍କର ଅକ୍ଷୟକିର୍ତ୍ତୀ । ଦ୍ୱିତୀୟ ଯଯାତି ଶୈବ ଥିଲେ ମଧ୍ୟ ତାମ୍ରଶାସନ ରେ ତାଙ୍କୁ "ପ୍ରତିନିଧି ମଧୁସୂଦନସ୍ୟ" ବୋଲି ବର୍ଣ୍ଣନା କରାଯାଇଛି । ତାଙ୍କ ସମୟ ୧୦୨୪ - ୧୦୪୦ ଖ୍ରୀ ।

ଦ୍ୱିତୀୟ ଯଯାତିଙ୍କ ଠାରେ ରାଜ ସୁଲଭ ସାମର୍ଥ୍ୟ, ସଂଗଠନ ଓ କୂଟନୈତିକ ପାରଦର୍ଶିତା ଲକ୍ଷ୍ୟ କରି ସୋମବଂଶୀ ମନ୍ତ୍ରୀ ଓ ସାମନ୍ତ ମାନେ ତାଙ୍କୁ ରାଜା କରିଥିଲେ । ଅତୀତ ରେ ୧ମ ଯଯାତିଙ୍କ ଦ୍ୱାରା କନୌଜ ରୁ ଆନୀତ ୧୦ ହଜାର ବ୍ରାହ୍ମଣଙ୍କ ଭୂମିକା ମଧ କିଛିଥିବ । ସେହି ସାମବେଦୀ ଓ ବାଜପେୟ ବ୍ରାହ୍ମଣଙ୍କ ସହାୟତାରେ ଦଶାଶ୍ୱମେଧ ଯଜ୍ଞ ରାଜଧାନୀ ପ୍ରତିଷ୍ଠା ଅବସରରେ ସମାହିତ ହୋଇଥିଲା । ତୋଷାଳୀ ଧର୍ମମତର ପରିବର୍ତ୍ତନ ପାଇଁ ବହୁ ଯଜ୍ଞ ଅନୁଷ୍ଠିତ ହୋଇଥିଲା କିନ୍ତୁ ଦଶାଶ୍ୱମେଧ ଏକ ରାଜକୀୟ ଆୟୋଜନ ଓ ବୃହତ୍ ଅନୁଷ୍ଠାନ ହୋଇଥିବାରୁ କିମ୍ବଦନ୍ତୀ ଓ ଇତିହାସ ତାଙ୍କୁ ସାଇତି ରଖିଛି । ଯାଜପୁରର ଦଶାଶ୍ୱମେଧ ଘାଟ ଏହାର ମୂକସାକ୍ଷୀ ।

ତୋଷାଳୀ ମାଟିରେ ବୌଦ୍ଧ ବ୍ରଜଜାନ ବା ମହାଜାନ ଯେପରି ଦୃଢଭାବେ ଦୀର୍ଘଦିନ ଧରି ଜନଜୀବନକୁ ପ୍ରଭାବିତ କରୁଥିଲେ । ତାହାକୁ ହ୍ରାସ କରିବାକୁ ଜନ୍ମେଜୟଙ୍କ ଠାରୁ ପ୍ରଥମ ଯଯାତିଙ୍କ ଉଦ୍ୟମ ଗୁରତ୍ୱପୂର୍ଣ୍ଣ । ଏହା ପଛରେ ଏକ ମନସ୍ତାତ୍ୱିକ କାରଣ ବି ରହିଛି । ଯେଉଁ ବ୍ରାହ୍ମଣ ମାନଙ୍କର କଠୋର ନିୟମ ଓ ଶାସ୍ତ୍ରୀୟ ଶାସନ ପାଇଁ ଭାରତରେ ହିନ୍ଦୁଧର୍ମ ବଦଳରେ ବୌଦ୍ଧ ଧର୍ମର ଅଭ୍ୟୁତଥାନ ଘଟିଥିଲା, ସେହି ବ୍ରାହ୍ମଣ ମାନଙ୍କର ଅଦ୍ଭୁତ ଉଦାରତା ବୌଦ୍ଧ ଧର୍ମକୁ ବି ଲୁପ୍ତ କରିଦେଇଥିଲା । ଗୌତମ ବୁଦ୍ଧଙ୍କୁ ବ୍ରାହ୍ମଣ ମାନେ ଅବତାର ଭାବେ ଗ୍ରହଣ କରିନେଲେ । ବୌଦ୍ଧ ଧର୍ମ ର ଅହିଂସା ନୀତି ବୈଷ୍ଣବ ଧର୍ମ ରେ ରୂପାନ୍ତରିତ ହେଲା । ସ୍ଥଳ ବିଶେଷ ରେ ଜାତିବର୍ଣ୍ଣ ଧର୍ମ ନିର୍ବିଶେଷରେ ଅନ୍ନ ମହାପ୍ରସାଦ ର ପ୍ରଚଳନ କରି ବୌଦ୍ଧ ମାନଙ୍କର ଜାତ୍ୟାଭିମାନ ଶୂନ୍ୟତାକୁ ପରୋକ୍ଷ ରେ ସ୍ୱୀକୃତି ଦିଆଗଲା । ଭାରତୀୟ ସଂସ୍କୃତିର ଏ ରୂପାନ୍ତର ତୋଷାଳୀ ମାଟି ରେ ପ୍ରଥମ ଯଯାତିଙ୍କ ଅମଳ ରେ କାର୍ଯ୍ୟକାରୀ ହୋଇଥିଲା । ତୋଷାଳୀ ର ୩ଟି ମୁଖ୍ୟ ବୌଦ୍ଧ ପୀଠ ଯାଜପୁର, ପୁରୀ, ଭୁବନେଶ୍ୱର ରେ ଯଯାତି ଏହି ସଂସ୍କାର ପ୍ରକ୍ରିୟା ର ଅଗ୍ରଦୂତ ସାଜିଥିଲେ । ପୁରୀରେ ଭଗ୍ନ ଜଗନ୍ନାଥଙ୍କ ମନ୍ଦିର ୩୮ ହାତ ବିମଳାଙ୍କ ପାଇଁ ୧୩ ହାତ ମନ୍ଦିର ଯଯାତି ୧ମ ନିର୍ମାଣ କରିଥିବାର ସୂଚନା ଐତିହାସିକ ମାନେ ଦେଇଛନ୍ତି । ଜଗନ୍ନାଥଙ୍କ ପୂଜାର୍ଚ୍ଚନା ପାଇଁ ଜମିବାଡି ଖଞ୍ଜି ଦେବ । ଓ ବୌଦ୍ଧ ମାନଙ୍କୁ ଆକୃଷ୍ଟ କରିବା ପାଇଁ ଶ୍ରୀ ମନ୍ଦିରରେ ଅନ୍ନ ମହାପ୍ରସାଦ ପ୍ରଚଳନ କରାଇବା ଯଯାତିଙ୍କ କାର୍ଯ୍ୟ । ତାଙ୍କ ଭଉଣୀ ତୋଷାଳୀର ରାଣୀ ପୃଥ୍ୱୀ ମହାଦେବୀ ପୁରୀରେ ବିମଳା ମନ୍ଦିର ଓ ପୃଥ୍ୱେଶ୍ୱର ମନ୍ଦିର ନିର୍ମାଣ ସହିତ ବ୍ରାହ୍ମଣ ମାନଙ୍କୁ ଗ୍ରାମଦାନ ଭୂମି ଦାନ କରିଥିଲେ । ପୁରୀ ସେତେବେଳେ ଦକ୍ଷିଣ ତୋଷାଳୀ ର ଏକ ପ୍ରଧାନ ସାସ୍କୃତିକ ପୀଠ । ଯେଉଁ ପରିବର୍ତ୍ତନ କାର୍ଯ୍ୟ ୧ମ ଯଯାତି ଆରମ୍ଭ କରିଥିଲେ,

ସେହି କାର୍ଯ୍ୟାବଳୀକୁ ଦ୍ୱିତୀୟ ଯଯାତି ଅଧିକ ସଂପ୍ରସାରଣ କରିଥିଲେ । ଏକାମ୍ର କ୍ଷେତ୍ରରେ ଭୁବନେଶ୍ୱର ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ଏହାର ସ୍ମାରକୀ । ଦ୍ୱିତୀୟ ଯଯାତିଙ୍କ ବେଳକୁ ବ୍ରାହ୍ମଣ୍ୟ ଧର୍ମ ତୋଷାଳୀରେ ଏକ ମଜଭୂତ ସ୍ଥିତିରେ ପହଞ୍ଚଯାଇଥିଲା । ସେହି ପୂର୍ଣ୍ଣ ପରିବର୍ତ୍ତନର ବିଜୟ ଉତ୍ସବ ଭାବେ ଦ୍ୱିତୀୟ ଯଯାତି ଯାଜପୁର ରେ ଦଶାଶ୍ୱମେଧ ଯଜ୍ଞ କରିବା ସମିଚୀନ ବ୍ରାହ୍ମଣ୍ୟ ଧର୍ମ ର ତୋଷାଳୀ ମାଟିରେ ପ୍ରସାର ସମ୍ବନ୍ଧରେ ଅନ୍ୟ ଏକ ପ୍ରମାଣ ପ୍ୟାରିମୋହନ ଆଚାର୍ଯ୍ୟଙ୍କ ଓଡିଶା ଇତିହାସ ରୁ ମିଳେ । ବଂଗ ଦେଶର ସେନ୍ ବଂଶର ଆଦିରାଜା ଶୂରସେନ (ଖ୍ରୀ ୯୬୪...) ବଂଗ ଦେଶରେ ଶାସ୍ତ୍ରଜ୍ଞ ଓ ବେଦ ବେଦାଙ୍ଗ ପାରଦର୍ଶୀ କୁଳୀନ ବ୍ରାହ୍ମଣ ମାନଙ୍କ ଅଭାବ ଲକ୍ଷ୍ୟ କରି ଓଡିଶାରୁ ବହୁସଂଖ୍ୟକ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରିଥିଲେ । ଓ ଯଯାତିଙ୍କୁ ଅନୁସରଣ କରି କାନ୍ୟକୁବଜରୁ ୫ ଜଣ ବ୍ରାହ୍ମଣଙ୍କୁ ବି ଆଣିଥିଲେ । ମାତ୍ର ଯଯାତିଙ୍କ ସ୍ମୃତିର ଅବଶେଷ ଦଶାଶ୍ୱମେଧ ଘାଟ ବ୍ୟତୀତ ଅନ୍ୟକିଛି ଏଠାରେ ଆବିଷ୍କୃତ ହୋଇନାହିଁ । ତାଙ୍କ ଇତିହାସ ପୁସ୍ତକ ୧୮୮୭ ପୃଷ୍ଠା ୫୬ ରେ ଲେଖିଛନ୍ତି ଯେ ଯଯାତି କେଶରୀ ଯାଜପୁର ଠାରେ ରାଜଧାନୀ ପ୍ରତିଷ୍ଠା କରିଥିଲେ । ସେଠାରେ ଚତୁଃଦ୍ୱାର ବିଶିଷ୍ଟ ଏକ ରାଜପ୍ରସାଦ ତାଙ୍କ ଆଜ୍ଞା ରେ ନିର୍ମିତ ହୋଇଥିଲା । ସେଥିରୁ ଭଗ୍ନାବଶେଷ ଆଜିକାଲି ଆଉ ଦୃଷ୍ଟିଗୋଚର ହୁଏ ନାହିଁ । ରାଜପ୍ରସାଦ ଓ ମନ୍ଦିର ଥିବା ସ୍ଥାନରେ ବର୍ତ୍ତମାନ ସରକାରୀ କଚେରୀ ଘରମାନ ପ୍ରତିଷ୍ଠା ହୋଇଛି । ଦଶାଶ୍ୱମେଧ ଘାଟ ଓ କନୌଜ ବ୍ରାହ୍ମଣଙ୍କ ସମ୍ବନ୍ଧରେ ପରଂପରା ରୁ ନିମ୍ନ ଶ୍ଳୋକ ଟି ମଧ ଉଲ୍ଲେଖ କରିଛନ୍ତି ।

॥ କନୌଜ ଦେଶାତ୍ ସ୍ୱୟମାହୁତା ଯେ ଦଶାଶ୍ୱମେଧାୟ ପୁରା ବିଧାତ୍ରା
ମର୍ତ୍ତ୍ୟସ୍ଥିତାଃ ସ୍ୱର୍ଗଗତାଶ୍ଚ ବିପ୍ରା ସ୍ତେ୍ୟଭ୍ୟେ । ଦ୍ୱିଜେଭ୍ୟଃ ପ୍ରବଦାମିଚାର୍ଘ୍ୟଂ

ଇତିହାସ ବର୍ଣ୍ଣିତ ପ୍ରଥମ ଯଯାତି ମହାଶିବଗୁପ୍ତ ୮୮୫-୯୨୫ ଓ ଦ୍ୱିତୀୟ ଯଯାତି ଚଣ୍ଡିହାର ଯଯାତି (୧୦୨୪-୧୦୪୦ ଖ୍ରୀ) ମଧ୍ୟରେ ସମୟର ବ୍ୟବଧାନ ହାରାହାରି ୧୦୦ ବର୍ଷ । ଏହି ୧୦୦ ବର୍ଷ ମଧ୍ୟରେ ତୋଷାଳୀ ମାଟିରେ ଯେଉଁ ସବୁ ଧାର୍ମିକ ଓ ରାଜନୈତିକ ପରିବର୍ତ୍ତନ ହେଲା ତାହା ଏକ କ୍ରମାଗତ କ୍ରିୟା, ଦୀର୍ଘଦିନର କାର୍ଯ୍ୟ । ତେଣୁ ଅଳ୍ପ ସମୟ ରେ ବା ଆକସ୍ମିକ ଭାବେ ରାଜ୍ୟ ଦଖଲ କରାଯାଇ ପରେ କିନ୍ତୁ ସାଂସ୍କୃତିକ ବିବର୍ତ୍ତନ ଏକ ଦୀର୍ଘ ଦିନର କାର୍ଯ୍ୟ । ଏହି କାର୍ଯ୍ୟ ରେ ଜନସାଧାରଣ ଜଡିତ । ତେଣୁ ଏହି ବିବର୍ତ୍ତନ କ୍ରିୟାକୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଇ ପାରେ (କ) ଅଷ୍ଟମ ଶତାବ୍ଦୀ ବେଳକୁ ଆର୍ଯ୍ୟ ମାନଙ୍କର ବର୍ଣ୍ଣାଶ୍ରମ ଧର୍ମ ସାରାଭାରତରେ ସଂପ୍ରସାରିତ

ହୋଇଥିଲା । କିନ୍ତୁ ତୋଷାଳୀ ରେ ମହାଜାନୀ ବୌଦ୍ଧ ମାନଙ୍କର ପ୍ରାଧାନ୍ୟ ଥିଲା । (ଖ) ପ୍ରଥମ ଯଯାତିଙ୍କ ପିତା ଜନ୍ମେଜୟଙ୍କ ଠାରୁ ଏହି ଧାର୍ମିକ ପରିବର୍ତ୍ତନ ଆରମ୍ଭ ହେଲା । (ଗ) କୂଟନୀତି ବଳରେ ଯଯାତିଙ୍କ ଭଗ୍ନୀ ପୃଥ୍ୱୀ ମହାଦେବୀ ଗୁହେଶ୍ୱର ପାଟକ ସିଂହାସନ ଲାଭ କଲେ ଓ ଯଯାତି ଙ୍କ ପରୋକ୍ଷ ପ୍ରେରଣା ରେ ବୌଦ୍ଧ ବିଲୋପ ଓ ହିନ୍ଦୁଧର୍ମ ର ଜାଗରଣ ର ବାର୍ତ୍ତାବହ ସାଜିଲେ । (ଘ) ପୃଥ୍ୱୀ ମହାଦେବୀଙ୍କ ଏ ସଂସ୍କାର ପ୍ରକ୍ରିୟା ରକ୍ଷଣଶୀଳ ବୌଦ୍ଧ ସାମନ୍ତ ମାନଙ୍କର ନାପସନ୍ଦ ହେବାରୁ କ୍ଷମତାଚ୍ୟୁତା ହେଲେ । (ଙ) ତାଙ୍କ ସମୟରେ ଯଯାତିଙ୍କ ପ୍ରେରଣାରେ ମଧ ଦେଶ କନୌଜରୁ ଆନୁମାନିକ ୧୦ ହଜାର ବ୍ରାହ୍ମଣ ଆସି ଏଠାରେ ବସତି ସ୍ଥାପନ କରିଥିଲେ ଓ ତୋଷାଳୀର ଜନଧର୍ମକୁ ପରିବର୍ତ୍ତନ କରୁଥିଲେ । (ଚ) ଭୀମରଥ ଙ୍କ ଦ୍ୱାରା ତୋଷାଳୀ ର ପତନ ଓ ସୋମବଂଶୀ ଶାସନ ପ୍ରତିଷ୍ଠା (ଛ) ଦ୍ୱିତୀୟ ଯଯାତିଙ୍କ ଦ୍ୱାରା ରାଜଧାନୀ ପ୍ରତିଷ୍ଠା ଓ ଦଶାଶ୍ୱମେଧ ଯଜ୍ଞର ଆୟୋଜନ ସହ ବହୁ ନିର୍ମାଣ କାର୍ଯ୍ୟ ଆରମ୍ଭ। ଉପରୋକ୍ତ ସିଦ୍ଧାନ୍ତ ବିଶ୍ୱାସ ଯୋଗ୍ୟ। ଅଷ୍ଟମ ଶତାବ୍ଦୀ ରେ ତୋଷାଳୀର ରାଜନ୍ୟବର୍ଗ ଯେପରି ମହାଜାନ ବୌଦ୍ଧ ଧର୍ମର ନିଷ୍ଠାପର ଭକ୍ତ ଥିଲେ, ଯେଭଳି ଭାବେ ବୌଦ୍ଧତନ୍ତ୍ର, ବୌଦ୍ଧଗ୍ରନ୍ଥ (ଗଣ୍ଡବିହ୍ୱ) (ପ୍ରଜ୍ଞା ପାରମିତା ସ୍ୱତ୍ର) ଆଦି ରଚନା କରି ସୁନାମଧନ୍ୟ ହୋଇଥିଲେ ବୌଦ୍ଧ ବିଶ୍ୱବିଦ୍ୟାଳୟ (ପୁଷ୍ପଗିରି ବିହାର), ଅସଂଖ୍ୟ ବୌଦ୍ଧ ମହାଜାନୀ ତନ୍ତ୍ରମୂର୍ତ୍ତି ନିର୍ମାଣ କରି ଯାଇଛନ୍ତି, ସେ ଜନଧର୍ମ ଟି ଏତେ ଶୀଘ୍ର ଏ ମାଟିରୁ ନିଷ୍କାସିତ ହେବା ଅସହଜ । ଲଳିତଗିରି, ଉଦୟଗିରି, ଖଡିପଦା ଷୋଳମ୍ପୁର, ଲାଙ୍ଗୁଡି ଆଦି ଅଞ୍ଚଳରୁ ଭୂଗର୍ଭ ଖନନ ଦ୍ୱାରା ଯେତେ ସବୁ ବୌଦ୍ଧ କିର୍ତ୍ତୀର ଅବଶେଷ ଦେଖିବାକୁ ମିଳେ ତାହା ବିସ୍ମୟକର, ବୌଦ୍ଧଧର୍ମ ପ୍ରତି ରାଜନ୍ୟବର୍ଗ ଓ ପ୍ରଜା ମାନଙ୍କର ନିଷ୍ଠା ଏଥିରୁ ଅନୁମିତ, ଉତ୍ତର ଭାରତର ଆର୍ଯ୍ୟମାନେ ଏ ପୀଠକୁ ଧ୍ୱଂସ କରିବାକୁ, ମହାଜାନୀ ମତବାଦକୁ ବିଲୋପ କରିବା ପାଇଁ ଶତ୍ରୁତା ଅପେକ୍ଷା ବିବାହ ଆଦି ପାରିବାରିକ ସଂପର୍କ ସ୍ଥାପନ କରି ବ୍ରାହ୍ମଣ୍ୟ ଧର୍ମର ଉତ୍‌ଥାନ କରାଇଥିଲେ । ପ୍ରଥମ ଯଯାତି ଙ୍କ ଶାସନର ୯ମ ବର୍ଷର ଦାନପତ୍ର (ମଧ୍ୟଦେଶୀୟ ଶ୍ରୀ ବଲ୍ଲଭ ଗ୍ରାମ ବିନିର୍ଗତାୟ ଉଡ୍ର ଦେଶେ । ଶ୍ରୀ ଶିଳାଭଞ୍ଜ ପଟ୍ଟୀ ବାସ୍ତବାୟ ଶ୍ରୀ ଶଂଖପାଣି ନାମେ ଦିବାକର ପୁତ୍ରାୟଃ) ରୁ ଏ ମନୋଭାବ ସ୍ପଷ୍ଟ ।

ଇତିହାସ ରୁ ଏ ଦୁଇଜଣ କରିତ୍‌କର୍ମୀ ଯଯାତିଙ୍କ ଜୀବନାୟନ ରୁ ଆଧୁନିକ ଯାଜପୁର ର ସାଂସ୍କୃତିକ ଇତିହାସର ବେଶ୍ କିଛି ଝଲକ ମିଳେ । ଜନଶ୍ରୁତି ବିଜଡିତ ଯଯାତି କେଶରୀଙ୍କ ଉପାଖ୍ୟାନ ଆଦୌ ଇତିହାସ ଅସମର୍ଥିତ କାହାଣୀ ନୁହେଁ । ପଣ୍ଡିତ ମାନେ ଯାଜପୁର ନାମ ର ଉଦ୍‌ଭବ ଓ ବିକାଶ ସମ୍ବନ୍ଧରେ ଯେତେଯାହା ବିଶ୍ଳେଷଣ

କରିଛନ୍ତି, ସେଥିରେ ଯଯାତି ଓ ଯଜ୍ଞନଗର, ଯଯାତିପୁର, ଯଯାତି ନଗର, ଯାଜ୍ଞିନଗର, ଯାଜିପୁର ଆଦି ଅନେକ ନାମ ଯଯାତି ଓ ଯଜ୍ଞ ଶବ୍ଦରୁ ଆସିଛି । ଯଦିଓ ଚଣ୍ଡିହାର ଯଯାତି ବିଧିବଦ୍ଧ ଭାବେ ରାଜଧାନୀ ପ୍ରତିଷ୍ଠା କରି ଏହାର ନାମ ଯଯାତିପୁର ଦେଇଥିଲେ କିନ୍ତୁ ତାଆଗରୁ ପ୍ରଥମ ଯଯାତି ବେଦଜ୍ଞ ବ୍ରାହ୍ମଣ ମାନଙ୍କୁ ବସତି ଦେଇଥିଲେ । ସେହି ଯଜ୍ଞନଗର ବା ଯାଗ ନଗର ବା ଯାଜିପୁର ମାନ୍ୟତା ପାଇସାରିଥିଲା ଯଯାତି ଓ ଯଜ୍ଞ ସହିତ ଯାଜପୁର ର କେବଳ ଭାଷାତାତ୍ତ୍ୱିକ ସଂପର୍କ ନାହିଁ ବରଂ ଇତିହାସ ସମର୍ଥିତ ସମ୍ବନ୍ଧ ଅଛି ।

ଦ୍ୱିତୀୟ ଯଯାତି ବ୍ରାହ୍ମଣ୍ୟ ଧର୍ମର ଉତ୍‌ଥାନ ପରେ ଯାଜପୁର ଅଂଚଳ ରେ କାଁ ଭାଁ ରହିଯାଇଥିବା ତନ୍ତ ସାଧନାର ବିଲୋପ ସାଧନ କରିବାକୁ ଅସଂଖ୍ୟ ବୌଦ୍ଧ ବିହାର ଓ ତନ୍ତ୍ରପୀଠକୁ ଧ୍ୱଂସ କରି ଶିବଲିଙ୍ଗ ସ୍ଥାପନ କରିଥିଲେ । ଯେଉଁ ତନ୍ତ୍ର ପୀଠରେ ବରୁଣେଶ୍ୱର, କିଲାଟେଶ୍ୱର ଓ ଉତ୍ତରେଶ୍ୱରଙ୍କ ଶୈବ ତ୍ରିକୋଣ ର ପରିକେନ୍ଦ୍ର ରେ ମା ବିରଜା ବିଭିନ୍ନ ସମୟରେ ବିଭିନ୍ନ ନାମରେ ପୂଜା ପାଇ ଆସୁଥିଲେ, ସେ ପରିକେନ୍ଦ୍ର କୁ ବଦଳାଇବା ଯଯାତିଙ୍କ ଏକ ଅନ୍ୟତମ କାର୍ଯ୍ୟଥିଲା । ଯଯାତି ବରୁଣେଶ୍ୱର - କିଲାଟେଶ୍ୱର ଓ ବିଲେଶ୍ୱରଙ୍କୁ ଆଧାର କରି ଏକ ପରିବୃତ୍ତର ପରିକଳ୍ପନା କରି ଏହାର କେନ୍ଦ୍ରରେ ଶୁଭସ୍ତମ୍ଭ ସ୍ଥାପନ କରି ତନ୍ତ୍ରଶକ୍ତି ପ୍ରାଧାନ୍ୟ କୁ ବିଲୋପ କରିଥିଲେ ବୋଲି ପଣ୍ଡିତ ମାନେ ମତ ଦିଅନ୍ତି । ଏହା ଦ୍ୱିତୀୟ ଯଯାତିଙ୍କ ସଂପୂର୍ଣ୍ଣ ଧାର୍ମିକ ସଂସ୍କାର ଥିଲା । ଯାଜପୁର ରେ ନିର୍ମିତ ଶୁଭସ୍ତମ୍ଭ କୁ ସୋମବଂଶୀ ମାନଙ୍କର ତୋଷାଳୀ ଅଧିକାର ର ସ୍ମାରକୀ ଭାବେ କିଛି ଐତିହାସିକ ମତ ଦେଲେ ମଧ ଅନ୍ୟ କେତେକ ପଣ୍ଡିତ ଏହା ଦଶାଶ୍ୱମେଧ ଯଜ୍ଞ ର ଶକ୍ତିଯୂପ ହୋଇ ପାରେ ବୋଲି ଧାର୍ମିତ ମତ ପ୍ରଦାନ କରିଥାନ୍ତି । କିମ୍ବଦନ୍ତୀ ଅନୁସାରେ ଦ୍ୱିତୀୟ ଯଯାତି ଗୋନାସିକା ପର୍ବତ ଠାରୁ ସିଦ୍ଧେଶ୍ୱର ମନ୍ଦିର ଯାଏଁ ରହିଥିବା ବୌଦ୍ଧ ସହଜ ଜ୍ଞାନର ଗୋପନୀୟ ତନ୍ତ୍ର ପୀଠକୁ ଧ୍ୱଂସ କରି ୨୫ ରୁ ଉର୍ଦ୍ଧ୍ୱ ଶୈବପୀଠ ନିର୍ମାଣ କରିଥିଲେ । ଏହି ଶୈବପୀଠ କୁ କ୍ରୋସଲିଙ୍ଗ ବୋଲି ମତ ପ୍ରକାଶ ପାଏ ଗବେଷକ ଡଃ ଏକଦଶୀ ପାଢୀଙ୍କ ମତରେ "ଯାଜପୁର ରେ ଯଯାତିଶ୍ୱର ନାମରେ , ଦ୍ୱିତୀୟ ଯଯାତି ଚଣ୍ଡିହାର ଙ୍କ ନାମରେ ଚଣ୍ଡେଶ୍ୱର ଓ ତାଙ୍କ ପୂର୍ବ ବଂଶଧର ଧର୍ମରଥ, ଭୀମରଥ ଙ୍କ ନାମାନୁସାରେ ଧର୍ମେଶ୍ୱର ଓ ଭୀମେଶ୍ୱର ନାମରେ ଶୈବପୀଠ ଅଛି । ଶୈବ ପରଂପରା କୁ ପ୍ରତିଷ୍ଠା ଦେବାକୁ ୬୦୦ ସହଜିଆ ତନ୍ତ୍ର ସାଧକଙ୍କୁ ହତ୍ୟା କରିଥିଲେ ବୋଲି କିମ୍ବଦନ୍ତୀ ଅଛି ।

ଯାଜପୁର ଠାରେ ଚଣ୍ଡିହାର ଦ୍ୱିତୀୟ ଯଯାତିଙ୍କ ରାଜତ୍ୱ ସମୟ ସମ୍ବନ୍ଧରେ ଆଲୋଚନା କରାଯାଇପାରେ । ଇତିହାସ ରେ ଯଯାତିଙ୍କ ରାଜତ୍ୱ ସମୟ (୧୦୨୪-୧୦୪୦) ଖ୍ରୀଷ୍ଟାବ୍ଦ । ମାତ୍ର ୧୬ ବର୍ଷର ଶାସନ କର୍ତ୍ତା ଯଯାତି ଦ୍ୱିତୀୟ । ଏହି ସୀମିତ

ସମୟରେ ଯଯାତିଙ୍କୁ ବହୁତ କାର୍ଯ୍ୟ କରିବାକୁ ପଡିଥିଲା । ଦୀର୍ଘ ୨୩ ବର୍ଷର ଚୋଳ ସେନା ବାହିନୀ ରେ କାର୍ଯ୍ୟ କରିବା ପରେ କୋଶଳ ର ସୋମବଂଶୀ ଶକ୍ତିକୁ ପୁନଃ ଜାଗରଣ କରି କୋଶଳ ଶାସନ କରାୟତ୍ତ କରିବା, ସୁବର୍ଣ୍ଣପୁର ରେ ଅସ୍ଥାୟୀ ରାଜଧାନୀ ନିର୍ମାଣ କରିବା, ସେମାବଂଶୀ ପ୍ରାଚୀନ ରାଜଧାନୀ ଯଯାତି ନଗର କୁ ପୁନରୋଦ୍ଧାର କରିବା, କୋଶଳ ଚାରିପଟ ଶତ୍ରୁ ମାନଙ୍କୁ ଦମନ କରିବା, ବିଶେଷ ଯୁଦ୍ଧାଭିଜ୍ଞାନ ରେ ଶକ୍ତିଶାଳୀ ତ୍ରିପୁରୀର କଲଚୁରୀ ରାଜା ଗାଙ୍ଗେୟ ଦେବ ଓ ତୁମ୍ମାଣ ର କଳଚୁରୀ ରାଜଙ୍କ ମିଳିତ ସେନାର ସମ୍ମୁଖୀନ ହେବା କମ୍ କଷ୍ଟସାଧ ସମୟ ସାପେକ୍ଷ ବ୍ୟପାର ନଥିବ ॥ ଦ୍ୱିତୀୟ ଯଯାତି ତାଙ୍କ ରାଜତ୍ୱର ୩ୟ ବର୍ଷର ତାମ୍ର ଶାସନ ରେ ନିଜକୁ କଳିଙ୍ଗ - କୋଙ୍ଗଦ-କୋଶଳ-ଉତ୍କଳର ଅଧିପତି ଭାବେ ବର୍ଣ୍ଣନା କରିଥିଲେ କିନ୍ତୁ ପରବର୍ତ୍ତୀ ତାମ୍ରଶାସନ ରେ ନିଜକୁ ଉତ୍କଳ ଓ କୋଶଳ ର ଅଧିଶ୍ୱର ବୋଲି ବର୍ଣ୍ଣନା କରିଛନ୍ତି । ସେଥିରୁ ତାଙ୍କ ରାଜ୍ୟର ବିସ୍ତୃତି କମି ଯାଉଥିଲା ବୋଲି ପରିଲକ୍ଷିତ ହୁଏ । ସେହି ସମୟରେ ସେ ରାଜଧାନୀ ଯଯାତି ନଗରରୁ ଯଯାତିପୁର (ଯାଜପୁର) କୁ ରାଜଧାନୀ ପରିବର୍ତ୍ତନ କରିଥିଲେ । ଭୁବନେଶ୍ୱର ଠାରେ ଲିଙ୍ଗରାଜ ମନ୍ଦିରରେ ମଳଦୂଆ ନିର୍ମାଣ କରିଥିଲେ । ସିଦ୍ଧେଶ୍ୱର ମନ୍ଦିର ଠାରେ ବୈତରଣୀ ତଟରେ ୧୧ ପାବଛ ବିଶିଷ୍ଟ ଘାଟ ନିର୍ମାଣ କରିଥିଲେ । ସେହିସ୍ଥାନ ରୁ ବୈତରଣୀଙ୍କୁ ଉତ୍ତର ବାହିନୀ ଗଂଗାର ଆଖ୍ୟା ପ୍ରଦାନ କରିଛନ୍ତି । ତାଙ୍କର ଏ ଗୌରବ ପଛରେ ପ୍ରଥମ ଯଯାତିଙ୍କ ୩୫ ବର୍ଷର ଧାର୍ମିକ ଓ ସଂାସ୍କୃତିକ ପୃଷ୍ଠଭୂମି ର ଅବଦାନକୁ ଏଡାଇ ହେବନାହିଁ । ତାଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ତୋଷାଳୀ ସାମ୍ରାଜ୍ଞୀ ପୃଥ୍ୱୀ ଦେବୀଙ୍କ ସମୟରେ ତନ୍ତ୍ରଧର୍ମର ଦୀର୍ଘ ବୁନିୟାଦୀ କୁ ଦୁର୍ବଳ କରିବା କାର୍ଯ୍ୟ ସହ କନୌଜ ବ୍ରାହ୍ମଣ ମାନଙ୍କର ବସତି ସ୍ଥାପନ, ଦ୍ୱିତୀୟ ଯଯାତିଙ୍କ ପୂର୍ଣ୍ଣ ସଂସ୍କାର କାର୍ଯ୍ୟକୁ ଗତି୍ଶୀଳ କରିଥିଲା । ପୃଥ୍ୱୀ ଦେବୀଙ୍କ ସିଂହାସନ ଚ୍ୟୁତ ଘଟଣା ପରେ ୧୦ ହଜାର କନୌଜ ବ୍ରାହ୍ମଣ ପରିବାର ରାଜପୃଷ୍ଠ ପୋଷକତା ଅଭାବରୁ ଯାଜପୁର ଅଂଚଳ ରେ ଅଗଣିତ ଶିବଲିଙ୍ଗ ମାନ ପ୍ରତିଷ୍ଠା କରି ନିଜର ଧର୍ମଧାରା ଅବ୍ୟାହତ ରଖିଥିଲେ । ତୋଷାଳୀ ରେ ପୃଥ୍ୱୀ ମହାରାଣୀଙ୍କୁ ଯେପରି ଗାଦିଚ୍ୟୁତ କରାଯାଇ ତାଙ୍କ ସ୍ଥାନରେ ତୃତୀୟ ତ୍ରିଭୁବନ ଦେବୀଙ୍କୁ ରାଣୀ କରାଗଲା ସେ ସମ୍ବନ୍ଧରେ ସୁରେନ୍ଦ୍ର ମହାନ୍ତି ଏକ ସୂକ୍ଷ୍ମ ସୂଚନା ଦେଇଛନ୍ତି । ତୃତୀୟ ତ୍ରିଭୂବନ ଦେବୀ କାମରୂପ ରାଜ କନ୍ୟା । ତାଙ୍କ ସିଂହାସନ ଲାଭ ପଛରେ ତୋଷାଳୀ ର ପାତ୍ର - ମନ୍ତ୍ରୀ - ସାମନ୍ତ ମାନଙ୍କର ବିଶେଷ ଭୂମିକା ଥିଲା । ହୁଏତ ପୃଥ୍ୱୀ ମହାଦେବୀ ଙ୍କ ଶାସନ ରେ ସୋମବଂଶୀ ଅନୁରାଗ ସହ ତାଙ୍କ ଭାଇ ପ୍ରଥମ ଯଯାତିଙ୍କ ନିର୍ଦ୍ଦେଶ ନିୟନ୍ତ୍ରଣ ଓ ପାରଂପାରିକ ବୌଦ୍ଧ ମହାଜାନୀ ତନ୍ତ୍ର

ପ୍ରଥା ଗୁଡିକର ବିଲୁପ୍ତି କରଣ ଅଭିଜାନ ସହ ସେମାନଙ୍କ ଉପରେ ରାଜଆଜ୍ଞା ବଳରେ ବ୍ରାହ୍ମଣ୍ୟ ଧର୍ମକୁ ଲଦି ଦିଆଯାଉ ଥିବା ଘଟଣା ଅସନ୍ତୋଷ ର କାରଣ ହୋଇପାରେ । ସେହି ଅସନ୍ତୋଷ ୧ମ ଯଯାତିଙ୍କ ଅନୁପସ୍ଥିତ ରେ ବିଦ୍ରୋହର ରୂପ ନେଇଥିଲା । ସୁରେନ୍ଦ୍ର ମହାନ୍ତି ତାଙ୍କ ପୁସ୍ତକ ଉତ୍କଳ ଯୁଗେ ଯୁଗେ ରେ ଓଡିଶାର ଏକ ସୁପ୍ରଚଳିତ ଲୋକବାଣୀ କୁ ଐତିହାସିକ ଅର୍ଥ ପ୍ରଦାନ କରିଛନ୍ତି । ଲୋକବାଣୀ ଟି ହେଲା "ବାରଭାଇ ଆଖଡା" । ୩ୟ ତ୍ରିଭୂବନ ଦେବୀଙ୍କ ପିତ୍ରାଳୟ କାମରୂପ ରାଜ୍ୟରେ ଏକ ସାମନ୍ତଚକ୍ର ଶାସନ ବ୍ୟବସ୍ଥା ପ୍ରଚଳିତ ଥିଲା । ଦେଶର ଶାସନ ଭାର ୧୨ ଜଣ ସାମନ୍ତଙ୍କ ନିର୍ଦ୍ଦେଶ ରେ ଜଣଙ୍କୁ ଅର୍ପଣ କରାଯାଉଥିଲା । ସାମନ୍ତମାନେ ପରାମର୍ଶ ଦାତା ହୋଇ ରହୁଥିଲେ । ତୋଷାଳୀ ର ସାମନ୍ତ ମାନେ ହୁଏତ ଯଯାତି ୧ମ ଙ୍କର ଆଧିପତ୍ୟ କୁ ଅସ୍ୱୀକାର କରି ନୀରବ ରହୁଥିଲେ ରାଜଦଣ୍ଡ ଭୟରେ । ସୁଯୋଗ ଆସିଲା ମାତ୍ରେ ୩ୟ ତ୍ରିଭୂବନ ଦେବୀ ତାଙ୍କ ପିତ୍ରାଳୟ ର ସାମନ୍ତ ଚକ୍ର ବ୍ୟବସ୍ଥା କୁ ପ୍ରଚଳନ କରାଇ ସାମନ୍ତ ମାନଙ୍କୁ ଶକ୍ତିଶାଳୀ କରିବାର ପ୍ରଲୋଭନ ଦେଖାଇ ନିଜେ ସାମ୍ରାଜ୍ଞୀ ହୋଇଥିଲେ । ଅତୀତର ବଂଶାନୁଗତ ପ୍ରଥା କୁ ବିଲୁପ୍ତ କରି ସାମନ୍ତମାନଙ୍କ ପ୍ରିୟଭାଜନଂ ହୋଇ ସିଂହାସନ ଲାଭ କରିଥିଲେ । ଇତିହାସ ଓ ସାହିତ୍ୟ ର ଏ ସୂଚନା ପ୍ରାସଂଗିକ ବୋଧହୁଏ । ସାମନ୍ତଚକ୍ର ଶାସନ ପଦ୍ଧତି ଗଣତାନ୍ତ୍ରୀକ ଶାସନ ବ୍ୟବସ୍ଥା ର ଶୈଶବ ରୂପ ।

ଯଜ୍ଞ ପ୍ରଥା ଦ୍ୱିତୀୟ ଯଯାତିଙ୍କ ବହୁ ପୂର୍ବରୁ ଏ ମାଟିକୁ ଆସିଛି ବୋଲି କିମ୍ବଦନ୍ତୀ ଗୁଡିକ ସୂଚନା ଦିଏ । ପ୍ରଥମ ଯଯାତିଙ୍କ ପିତା ଜନ୍ମେଜୟ କଟକ ଜିଲ୍ଲାର ଡାଳିଯୋଡା ଅନ୍ତର୍ଗତ ଆଗ୍ରାହାଟ ଗ୍ରାମରେ ଗୋଟିଏ ମହାଯଜ୍ଞ କରାଇଥିବାର ଜନଶ୍ରୁତି ଅଛି । ତେଣୁ ଯାଜ୍ଞିକ ବ୍ରାହ୍ମଣ ମାନେ ଦ୍ୱିତୀୟ ଯଯାତିଙ୍କ ଶାସନ ର ବହୁପୂର୍ବରୁ ତୋଷାଳି ମାଟିରେ ପଦାର୍ପଣ କରି ବ୍ରାହ୍ମଣ ଧର୍ମର ପ୍ରଚାର ଓ ପ୍ରସାର କରିଥିଲେ । ସମ୍ଭବତଃ ପୃଥ୍ୱୀମହାଦେବୀଙ୍କ ରାଜତ୍ୱ କାଳରେ । ୧ମ ଯଯାତି ତାଙ୍କ ରାଜନୀତି, କୂଟନୀତି, ସାମରିକ ଦକ୍ଷତା, ସଂସ୍କୃତି ପ୍ରେମ, ଧର୍ମୀୟ ଭାବନା ଓ ଓଡିଶାର ସଂହତି ସ୍ଥାପନ କରିବା ପାଇଁ ଓଡିଶା ଇତିହାସ ରେ ଯେପରି ଅମର, ସେହିପରି ଯାଜପୁର ମାଟିରେ ସ୍ମରଣୀୟ ।

ଯାଜପୁର ଇତିହାସ ୨ ଜଣ ଯଯାତି କେଶରୀଙ୍କ ଅବଦାନ କୁନେଇ ଗଠିତ । ଗୁହେଶ୍ୱର ପାଟକ ନାମରୁ ଏ ଅଂଚଳ ଯାଜପୁର ନାମ ଧାରଣ କରିବା ଯାଏଁ ଇତିହାସର ପ୍ରଳମ୍ବିତ ଧାରାରେ ଯଯାତି ହିଁ ଅମର । ଯଯାତି ହିଁ ଯାଜପୁର ଓ ଯାଜପୁର ହିଁ ଯଯାତି – ଏ ବାର୍ତ୍ତା ରେ ନୀରବ ନରହି ତାଙ୍କ ସମ୍ବନ୍ଧରେ ଉଚ୍ଚତର ଗବେଷଣା ଆବଶ୍ୟକ । ଇତିହାସ ର କବର ମଧ୍ୟରୁ କଣ ସତ୍ୟ ତାହା ଏ ମାଟିର ଆରାଧ ଦେବୀ ମା ବିରଜା ହିଁ ସାକ୍ଷୀ ।

ଶେଷରେ ଏତିକି କୁହାଯାଇ ପାରେ ଯେ ଯାଜପୁର ର ପ୍ରବାଦ ପୁରୁଷ ୨ ଜଣ ଯଯାତି । ପ୍ରଥମ ଯଯାତି ତାଙ୍କ ଭଗ୍ନୀ ତୋଷାଳି ରାଣୀ ପୃଥ୍ୱୀ ମହାଦେବୀଙ୍କ ସହାୟତାରେ ତତ୍‌କାଳୀନ ରାଜଧର୍ମ ତାନ୍ତ୍ରୀକ ମହଜାନ ଧର୍ମ କୁ ରାଜଶକ୍ତି ବଳରେ ବଦଳାଇବା ପାଇଁ ଉଦ୍ୟମ କରିବା ସହିତ ରାଜଉଆସ ବାହାରେ ଅଗଣିତ ପ୍ରଜାଗଣଙ୍କ ବୌଦ୍ଧ ତନ୍ତ୍ର ଚିନ୍ତାଧାରାକୁ ବଦଳାଇବା ପାଇଁ ୧୦ ହଜାର କାନ୍ୟକୁବଜ୍ ବ୍ରାହ୍ମଣଙ୍କ ଅଣାଇଥିଲେ । ଏ ଆର୍ଯ୍ୟକରଣ ନୀତି ପ୍ରାୟ ୧୦୦ ବର୍ଷ ଧରି ଏ ମାଟିରେ ଚାଲିଆସିଥିଲା । ରାଜପୃଷ୍ଟକତା ଲାଭ କରି ଯାଜପୁର ମାଟିରୁ ବ୍ରାହ୍ମଣ ମାନେ ବୌଦ୍ଧ ପରଂପରା କୁ ନଷ୍ଟ କରି ଶୈବ-ଶାକ୍ତ ଓ ବୈଷ୍ଣବ ଚିନ୍ତାଧାରା ର ପ୍ରତିଷ୍ଠା କରିବାକୁ ଉଦ୍ୟମ ଜାରି ରଖିଥିଲେ । ଦ୍ୱିତୀୟ ଯଯାତି ମହାଶିବଗୁପ୍ତ ଚଣ୍ଡିହାର ପ୍ରଥମ ଯଯାତିଙ୍କ ସ୍ୱପ୍ନକୁ ସାକାର କରି ଏ ପବିତ୍ର ମାଟିରେ ସୋମବଂଶୀ ମାନଙ୍କ ରାଜଧାନୀ ପ୍ରତିଷ୍ଠା କରିଥିଲେ । ବିବିଧ ଯଜ୍ଞ ମଧ୍ୟରୁ ରାଜସ୍ୱୟ ଯଜ୍ଞ ଓ ଅଶ୍ୱମେଧ ଯଜ୍ଞ ଦ୍ୱୟ ଏକ ସାମାଜିକ ମହୋତ୍ସବ ବୋଲି ପଣ୍ଡିତ ମାନଙ୍କର ମତ । ଦ୍ୱିତୀୟ ଯଯାତି ତୋଷାଳୀ ର ସମ୍ରାଟ ଭାବେ ସର୍ବସାଧାରଣଙ୍କ ସହିତ ମିଶି ସେଦିନ ଯେଉଁ ବିଜୟ ଉତ୍ସବ ପାଳନ କରିଥିବେ ତାହା ହିଁ ଆମର ଐତିହାସିକ ଦଶାଶ୍ୱମେଧ ଯଜ୍ଞ । ପ୍ରଥମ ଯଯାତି ତୋଷାଳୀ ର ରାଜା ନଥିଲେ, ତେଣୁ ତାଙ୍କ ଦ୍ୱାରା ଏପରି ସାର୍ବଜନୀନ ଯଜ୍ଞ ସମ୍ଭବ ହୋଇନଥିବ ।

ପ୍ରଥମ ଯଯାତି (୮୮୫-୯୨୦) ଓ ଦ୍ୱିତୀୟ ଯଯାତି (୧୦୨୪-୧୦୪୦) ଉଭୟଙ୍କୁ ଯାଜପୁରର ଇତିହାସ, ସ୍ମରଣୀୟ ଓ ବରଣୀୟ ମହାତ୍ମା ଭାବେ ଅଭିନନ୍ଦନ ଜଣାଏ ସେ ୧ମ ବା ୨ୟ ଯଯାତି ହୁଅନ୍ତୁ ସେମାନଙ୍କ ବଂଶ ସୋମବଂଶ ରୂପେ ପରିଚିତ । କେଶରୀ ବଂଶ ଭାବେ ମାଦଳାପାଞ୍ଜି ଆଦି ପ୍ରାଚୀନ ନଥିପତ୍ର ରେ ବର୍ଣ୍ଣିଂତ ଓ ଜନସାଧାରଣଙ୍କ ସ୍ମୃତିରେ ସେମାନେ କେଶରୀ ବଂଶ । ଏହି କେଶରୀ ଶବ୍ଦ ସେମାନଙ୍କ ନାମ ସହିତ କୋଶଳ ମାଟିରେ ସଂଯୁକ୍ତ ହୋଇନାହିଁ । ସେମାନେ ଯେବେଠାରୁ ଯାଜପୁର ମାଟିରେ ପ୍ରତିଷ୍ଠା ଲାଭ କଲେ ଓ ମା ବିରଜାଙ୍କ ଭକ୍ତ ଭାବେ ପରିଗଣିତ ହେଲେ ସେବେଠାରୁ କେଶରୀ ଶବ୍ଦ ତାଙ୍କ ପଛରେ ଲାଗିଥିବ ଓ କାଳକ୍ରମେ ଜନପ୍ରସିଦ୍ଧି ଅର୍ଜନ କରିଥିବ । ଗୁହେଶ୍ୱର ପାଟକ କୁ ଯଯାତିପୁର ରେ ପରିଣତ କରିବା ଓ ଶୈବ - ଶାକ୍ତ -ବୈଷ୍ଣବ ଧର୍ମର ପ୍ରତଷ୍ଠା ସହିତ ତନ୍ତ୍ରଯାନ ର ବିଲୋପ ସାଧନ କିରବାରେ ଦୁଇଜଣ ଯଯାତିଙ୍କ ଅବଦାନ ଅବିସ୍ମରଣୀୟ ।

ଯଯାତିଙ୍କ ଦ୍ୱାରା ନିର୍ମିତ ମନ୍ଦିର ଯଦିଓ ନାହିଁ ତଥାପି ସେକାଳର ମୂର୍ତ୍ତି ଯାଜପୁର ମାଟିକୁ ଏକ ଐତିହାସିକ ଓ ସାଂସ୍କୃତିକ ମର୍ଯ୍ୟାଦା ଦେବାକୁ ସମର୍ଥ । ସାଧାରଣତଃ

ଅଶ୍ୱମେଧ ଯଜ୍ଞ କୌଣସି ବ୍ୟକ୍ତିବିଶେଷଙ୍କ ବ୍ୟକ୍ତିଗତ ପାପାଚାର ରୁ ମୁକ୍ତ ହୋବାପାଇଁ କିମ୍ୱା କୌଣସି ରାଜ୍ୟ ଉପରେ ନିଜର ସାର୍ବଭୌମତ୍ୱ ସ୍ଥାପନ ଉଦ୍ଦେଶ୍ୟ ରେ କରାଯାଇଥାଏ । ଏ ଦୃଷ୍ଟି କୋଣରୁ ସ୍ମରଣୀୟ ଦଶାଶ୍ୱମେଧ ଯଜ୍ଞ ଟି ଦ୍ୱିତୀୟ ଯଯାତି ଙ୍କର କିର୍ତ୍ତୀ ବୋଲି ଅନୁମତି ହୁଏ ।

କିନ୍ତୁ ଯାଜପୁରର ଆରାଧ୍ୟଦେବୀ ମା ବିରଜାଙ୍କ ଇତିହାସ ରୁ ଅନୁମିତ ହୁଏ ଯେ ଶାକ୍ତ ମହିଷାମର୍ଦ୍ଦିନୀ ଦ୍ୱିଭୂଜା ମାଙ୍କୁ ବୈଷ୍ଣବୀ ଦେବୀ ଭାବରେ ଉପସ୍ଥାପନ କରିବା ଓ ଯାଜପୁରକୁ ପିତୃତୀର୍ଥର ମର୍ଯ୍ୟାଦା ଦେବାରେ ପ୍ରଥମ ଯଯାତିଙ୍କ ଅବଦାନ ଅବିସ୍ମରଣୀୟ। ପିତୃକ୍ଷେତ୍ର ନିର୍ମାଣ, ଗଦାକ୍ଷେତ୍ରର ପରିଚୟ ପ୍ରଦାନ, ବରାହନାଥଙ୍କ ପ୍ରତିଷ୍ଠା, ବୈତରଣୀ ରେ ପିତୃତୀର୍ଥ ସ୍ଥାପନ ଆଦି ପ୍ରଥମ ଯଯାତିଙ୍କ ଅକ୍ଷୟ କିର୍ତ୍ତୀ ବୋଲି ବହୁ ପଣ୍ଡିତ ମତ ଦିଅନ୍ତି ।

ଯାଜପୁର ର ଇତିହାସ ଓ ଲୋକବିଶ୍ୱାସ ସହିତ ଯଯାତି ଘନିଷ୍ଠ ଭାବେ ମିଶ୍ରିତ । ଦ୍ୱିତୀୟ ଯଯାତି ଉତ୍ର ରାଜକୁମାରୀ ବିମଳାଙ୍କୁ ମା ବିରଜାଙ୍କ ଆଶୀର୍ବାଦ ରେ ବିବାହ କରିବା କାହାଣୀ ମଧ୍ୟ ଏକ ଶକ୍ତ ପାରଂପାରିକ ବିଶ୍ୱାସ । ପ୍ରଥମ ଯଯାତି ହୁଅନ୍ତୁକି ଦ୍ୱିତୀୟ ଯଯାତି ହୁଅନ୍ତୁ ଯାଜପୁର ର ସାଂସ୍କୃତିକ ଅଭ୍ୟୁଦୟ ପାଇଁ ଯଯାତି କେଶରୀ ଖୁବ୍ ପରିଚିତ ନାମ । ପ୍ରାକୃତିକ ବିପର୍ଯ୍ୟୟ ବନ୍ୟା, ବାତ୍ୟା, ପ୍ରକୋପ ରେ ଯଯାତିଙ୍କ କିର୍ତ୍ତୀ ଆଦି ବିସ୍ମୃତି ଗର୍ଭରେ କିନ୍ତୁ ଲୋକବିଶ୍ୱାସ ରେ ସେ ଯାଜପୁର ପାଇଁ ବହୁକିଛି କରିଛନ୍ତି ବୋଲି ବିଶ୍ୱାସ କରାଯାଏ ।

ସହାୟକ ଗ୍ରନ୍ଥ :


୧. ଓଡିଶା ଇତିହାସ : ପ୍ୟାରିମୋହନ ଆଚାର୍ଯ୍ୟ (୧୮୭୯)

୨. ଉତ୍କଳ ପ୍ରତିଭା : ମହେନ୍ଦ୍ର ପଟ୍ଟନାୟକ, ଷ୍ଟୁଡେଣ୍ଟସ୍ ଷ୍ଟୋର, ବରହମପୁର

୩. ଓଡିଶା ଇତିହାସ : ଡ: ଯଜ୍ଞ କୁମାର ସାହୁ

୪. ଓଡିଶା ଇତିହାସ : ଡ: ଅତୁଲ ଚନ୍ଦ୍ର ପ୍ରଧାନ

୫. ଯୁଗେ ଯୁଗେ ଯାଜପୁର : ଡଃ ଏକଦଶୀ ପାଢୀ

୬. ଝଂକାର - ପ୍ରବନ୍ଧ - ଅତୀତ ଓଡିଶାର ରାଣୀ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, (୧୯୭୭, ଜାନୁୟାରୀ)

୭. The evolution of Indian Culture

L. N. Luniya

୮ Cultural Heritage of Jajpur - 2005

S.L.F.S.S., BBSR.

# ପରମବୀର - ପରମାର୍ଦ୍ଦି ଦେବ

ତ୍ରୟୋଦଶ ଶତକରେ ଉତ୍କଳର ବିଜୟ ଗାଥାରେ ଯେଉଁ ବୀର ମାନଙ୍କ କୃତିତ୍ୱ ଅମର ହୋଇ ରହିଛି , ସେମାନଙ୍କ ମଧ୍ୟରୁ ପରମବୀର ପରମାର୍ଦ୍ଦି ସାମନ୍ତରାୟ ଅନ୍ୟତମ । ଇତିହାସ ସାଧାରଣତଃ ରାଜା, ରାଣୀ, ଚିରସ୍ଥାୟୀ କିର୍ତ୍ତୀ ର ଇତିବୃତ୍ତ କୁ ସାଇତି ରଖିଥାଏ । ଇତିହାସ ଯାହା ଫିଙ୍ଗି ଫିଙ୍ଗି ଚାଲିଥାଏ ସାହିତ୍ୟ ତାକୁ କଳାଚାତୁର୍ଯ୍ୟ ମୟ ଭଣ୍ଡାରରେ ସାଉଁଟି ରଖେ । ଇତିହାସ ର ସୂଚନା ଓ ସାହିତ୍ୟର ପର୍ଯ୍ୟାଲୋଚନା ମଧ୍ୟରେ ଆମେ ପରମାର୍ଦ୍ଦି ଦେବଙ୍କୁ ଜଣେ ନିଷ୍ପାପର ସୈନିକ, ଦକ୍ଷ ସେନାପତି, କୁଶଳୀ କୁଟନୈତିଜ୍ଞ ଓ ଦେଶ ପାଇଁ ସହୀଦ ହୋଇଥିବା ଜଣେ ବରେଣ୍ୟ ଜନନାୟକଙ୍କୁ ଦେଖୁ । ତାଙ୍କ କୃତି ଓ ତ୍ୟାଗ ଉତ୍କଳ ପ୍ରଦେଶ ର ସ୍ୱାଭିମାନ ପାଇଁ ସ୍ମରଣୀୟ ।

ପରମବୀର ପରମାର୍ଦ୍ଦି ଦେବଙ୍କ ଜୀବନ ଓ କୃତିକୁ ଆଲୋଚନା କରିବା ପୂର୍ବରୁ ତତ୍‌କାଳୀନ ଉତ୍କଳର ରାଜନୈତିକ ଅବସ୍ଥା, ଶାସନ ବ୍ୟବସ୍ଥା ଓ ସାମରିକ ପରଂପରା ସମ୍ବନ୍ଧ ରେ ଅବଗତ ହେବା ଆବଶ୍ୟକ । ଏକାଦଶ ଶତାବ୍ଦୀ ପୂର୍ବରୁ ଗଂଗବଂଶର ଶାସନ ୫୦୦/୬୦୦ ବର୍ଷ ଧରି ଦକ୍ଷିଣ କଳିଙ୍ଗ ର ସୀମିତ ଅଂଚଳ ରେ ସୀମାବଦ୍ଧ ଥିଲା ମହେନ୍ଦ୍ରଗିରି ଓ ଗୋଦାବରୀ ମଧ୍ୟସ୍ଥ କ୍ଷୁଦ୍ର ରାଜ୍ୟରେ ସେମାନଙ୍କ ପୈତୃକ ପ୍ରଶାସନ । ଏହା କେତେବେଳେ ବିସ୍ତାର ଲାଭ କରୁଥିଲା ତ କେତେବେଳେ ସଂକୁଚିତ ହୋଇଯାଇଥିଲା ସେମାନେ ଶକ୍ତିଶାଳୀ ହୋଇ ସାମ୍ରାଜ୍ୟ ବିସ୍ତାର କାରଣ ରୁ ସୋମବଂଶୀ ରାଜା କର୍ଣ୍ଣଦେବଙ୍କୁ ପରାସ୍ତ କରି ଉତ୍କଳ ଅଧିକାର କଲେ ଓ କିଛି ଦିନ କର୍ଣ୍ଣଦେବଙ୍କୁ ଏକ ସାମନ୍ତରାଜା କରି ପ୍ରଶାସନ ଚଳାଇଲେ । ଏହି ସୋମବଂଶୀ ଶେଷ ସମ୍ରାଟ କର୍ଣ୍ଣଦେବଙ୍କ ମୃତ୍ୟୁପରେ ୧୧୧୮ ଖ୍ରୀରେ ଗଂଗଶାସନ ବିଧିବଦ୍ଧ ଭାବେ ଉତ୍କଳ ମାଟିରେ ପ୍ରତିଷ୍ଠିତ ହେଲା । କିମ୍ବଦନ୍ତୀ ଅନୁସାରେ ଉତ୍କଳ ର ଗୃହବିବାଦ ଯୋଗୁଁ ଚୋଳଗଂଗ ଦେବ ସାମ୍ରାଜ୍ୟ ବିସ୍ତାର କରିବାକୁ ସୁଯୋଗ ପାଇଲେ । ଗୃହଶତ୍ରୁ ମାନଙ୍କ ନିମନ୍ତ୍ରଣ ପାଇ, ସେ ସମରାଭିଯାନ କରିଥିଲେ । ଅତୀତ ଗଂଗବଂଶୀ ରାଜାମାନେ ଦକ୍ଷିଣ ଭାରତର ଚାଲୁକ୍ୟ ବଂଶ, ପୂର୍ବଭାରତର ଭୌମକର ବଂଶ ପରେ ସୋମବଂଶ ଓ ଉତ୍ତର ପଟରେ ଶୈଳୋଦ୍‌ଭବ ବଂଶ ଗହଣରେ ରହି ସାମ୍ରାଜ୍ୟବିସ୍ତାର କରିପାରୁନଥିଲେ । ୧୧୧୮ ଖ୍ରୀ ପରେ ସୋମବଂଶୀଙ୍କ ଠାରୁ ଉତ୍କଳ ଛଡାଇ ନେଇ ସେମାନଙ୍କ ରାଜଧାନୀ (କଳିଙ୍ଗ ନଗର) ଆଧୁନିକ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଳମ୍ ଜିଲ୍ଲାର ମୁଖଲିଙ୍ଗମ୍ ଠାରୁ ଉଠାଇ ଆଣି କଟକ ରେ ସ୍ଥାପନ କଲେ ।

ସେମାନଙ୍କର ସୁବିଶାଳ ସେନାବାହିନୀ, ଓ ରାଷ୍ଟ୍ର ନିରାପର୍ତ୍ତା ନୀତି ଉଚ୍ଚମାନର ଥିଲା । ରାଷ୍ଟ୍ରର ସୁରକ୍ଷା ପାଇଁ ୫ଟି ଦୁର୍ଗ ନିର୍ମାଣ କରିଥଲେ । ଷ୍ଟାର୍ଲିଂଙ୍କ ଭାଷାରେ (Gangeswar dev had five Kataks or royal metropolis Viz - Jajpur, Chaudwar, Amarabati Chattas, and Bidanashi Cuttack - Orissa by Starling) । ସୋମବଂଶୀ ରାଜା ମାନଙ୍କ ମଧ୍ୟରୁ ଶେଷ ରାଜା ମାନେ ଯାଜପୁର ଓ ଭୁବନେଶ୍ୱରକୁ ସେମାନଙ୍କର ଦୁଇଟି ରାଜଧାନୀ ବୋଲି ଗ୍ରହଣ କରୁଥିଲେ । ଯାଜପୁର ର ମହାନ ପରଂପରା ଐତିହ୍ୟ ଓ ସାମରିକ ମହତ୍ୱ ଦୃଷ୍ଟିରୁ ଗଂଗରାଜା ମାନେ ମଧ୍ୟ ଯାଜପୁରକୁ ଏକ ମହତ୍ୱପୂର୍ଣ୍ଣ ସାମରିକ କ୍ଷେତ୍ର ଓ ପ୍ରଶାସନିକ ଏକକ ଭାବେ ମାନ୍ୟତା ଦେଇ ଆସୁଥିଲେ । ଅତୀତ ର ଗୌରାବାବହ ଯାଜପୁର ପୁଣିଥରେ ଗଂଗାଠାରୁ ଗୋଦାବରୀ ବିସ୍ତୃତ ଉତ୍କଳ ର ସାମରକ ଓ ଆର୍ଥିକ ପ୍ରାଣକେନ୍ଦ୍ର ହୋଇ ଉଠିଲା । ଯାଜପୁର ମାଟି ସେଦିନ ସୋମବଂଶୀ ବୀର ଚଣ୍ଡିହାର ଯଯାତି ଙ୍କ ପରେ କଲଚୁରୀ ବଂଶୀୟ ପରମବୀରଙ୍କୁ ପ୍ରଶାସକ ଭାବେ ଅଭିନନ୍ଦନ ଜଣାଇଥିଲ । ବିଶାଳ ଉତ୍କଳ ସେନା ବାହିନୀର ସର୍ବୋଚ୍ଚ ସେନାପତି ପରମବୀର ପରମାର୍ଦ୍ଦି ଦେବ । ଯାଜପୁରର ପ୍ରଶାସକ ଭାବେ ୧୨୪୩ ଖ୍ରୀ ରେ ନିଯୁକ୍ତି ପାଇଥିଲେ । ପରମବୀରଙ୍କ ସାମରିକ ନେତୃତ୍ୱ ଓଡିଶା ଇତିହାସ ରେ ଏକ ଅମ୍ଳାନ କିର୍ତ୍ତୀ ।

ସେ ଥିଲା ଏକ ଐତିହାସିକ କାହାଣୀ-ତୃତୀୟ ଅନଙ୍ଗଭୀମ ଦେବଙ୍କ ଠାରୁ ନରସିଂହ ଦେବଙ୍କ ରାଜତ୍ୱ ଯାଏଁ ଏ କାହାଣୀ ପ୍ରଲମ୍ବିତ । ୧୦୭୮ ଖ୍ରୀ ରୁ ସାମ୍ରାଜ୍ୟ ବିସ୍ତାର ପାଇଁ ଗଂଗବଂଶ ଓ କଲଚୁରୀ ବଂଶ ମଧ୍ୟରେ କଳହ ଲାଗିରହିଥାଏ । ବାରମ୍ବାର ଗଂଗ ମାନଙ୍କୁ ଓ କୋଶଳ ର ସୋମବଂଶୀ ମାନଙ୍କୁ ଅସ୍ତବ୍ୟସ୍ତ କରି ଚାଲିଥାଏ । ଏମାନଙ୍କ ଆକ୍ରମଣ ର ମୁକାବାଲା କରି ନପାରି ସୋମବଂଶୀ ମାନେ ପୂର୍ବ ଓଡିଶା କୁ ପଳାଇ ଆସିଥିଲେ ଓ ଦ୍ୱିତୀୟ ଯଯାତି ଏହି କାରଣରୁ ଯାଜପୁର ଠାରେ ରାଜଧାନୀ ପ୍ରତିଷ୍ଠା କରିଥିଲେ । ସୋମବଂଶୀ ଙ୍କ ଠାରୁ କଲଚୁରୀ ମାନେ କୋଶଳ ଛଡାଇ ନେଲେ ଓ ଗଂଗବଂଶର ଦକ୍ଷିଣ କଳିଙ୍ଗ କୁ ମଧ୍ୟ ଅସ୍ତବ୍ୟସ୍ତ କରିଥାନ୍ତି । ଗଂଗ ମାନେ ସୋମବଂଶୀ ଙ୍କ ରାଜା କର୍ଣ୍ଣଦେବ ଙ୍କ ଠାରୁ ଉତ୍କଳ ଦଖଲ ପରେ କ୍ରମଶଃ ଶକ୍ତିଶାଳୀ ହୋଇ ଚିରଶତ୍ରୁ କଳଚୁରୀ ମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ଯୋଜନା କରୁଥାନ୍ତି । ସେମାନେ ଉତ୍କଳ ହାସଲ ପରେ କଲଚୁରୀଙ୍କ ଠାରୁ କୋଶଳ ଉଦ୍ଧାର କରିବା ପାଇଁ ମନସ୍ଥ କରିଥାନ୍ତି । ସେଦିନ ଗଂଗ ମାନଙ୍କର ଥିଲା ଏ ଯୁଦ୍ଧ ଏକ ମର୍ଯ୍ୟାଦାର ପ୍ରଶ୍ନ । ସମରାଭିଯାନ ରେ କେତେବେଳେ ଗଂଗ ଓ କେତେବେଳେ କଲଚୁରୀ ମାନେ ପଛେଇ ଯାଉଥାନ୍ତି । ଯୁଗେ

ଯୁଗେ ରାଜନୀତି ଓ କୂଟନୀତି ପରସ୍ପର ପରିପୂରକ । ଯେଉଁଠି ରାଜନୀତି ହାରିଯାଏ ସେଠାରେ କୂଟନୀତି ର ବିଜୟ ଘଟେ ।

ଦକ୍ଷିଣ କୋଶଳର କଳଚୁରୀ ରାଜା ପ୍ରତାପମଲ୍ଲଙ୍କ ସମୟରେ ଏହିପରି ଏକ କୂଟନୀତି ଖେଳ, ଗଂଗ ଓ କଲଚୁରୀ ମାନଙ୍କ ମଧ୍ୟରେ ହୋଇଥିଲା । ରାଜା ପ୍ରତାପମଲ୍ଲ ଦୁର୍ବଳମନା, ଅନଭିଜ୍ଞ ଓ ଅଳ୍ପବୟସ୍କ । ଅନ୍ୟ ଏକ ରାଜପୁତ୍ର ପରମାର୍ଦ୍ଦି ଦେବ ଦକ୍ଷ, ଚତୁର ସମର ସୁକୌଶଳୀ, ବିଚକ୍ଷଣ ସେନାନାୟକ । ୧୨୨୦ ଖ୍ରୀ ଅନଙ୍ଗଭୀମ ଦେବ ପରମାର୍ଦ୍ଦି ଦେବଙ୍କୁ କୁଟନୈତିକ ମୋହରେ କରି ପ୍ରତାପମଲ୍ଲ ଙ୍କୁ ପରାସ୍ତ କରି, ଦକ୍ଷିଣ କୋଶଳ ଦଖଲ କରିଥଲେ । ଐତିହାସିକ ମାନଙ୍କ ମଧ୍ୟରେ ୨ଟି ଭିନ୍ନ ମତ ଦେଖାଯାଏ ୧୨୨୦ ଖ୍ରୀ ରେ ଗଂଗ ଓ କଲଚୁରୀ ମାନଙ୍କ ମଧ୍ୟରେ ଯୁଦ୍ଧବିରତି ପରେ ଏକ ସନ୍ଧି ହୋଇଥିଲା । ସେହି ସନ୍ଧିର ସର୍ତ୍ତ ସ୍ୱରୂପ କଲଚୁରୀ ରାଜକୁମାର ପରମାର୍ଦ୍ଦି ଦେବ ଅନଙ୍ଗଭୀମଙ୍କ କନ୍ୟା ଚନ୍ଦ୍ରିକା ଦେବୀଙ୍କୁ ବିବାହ କରିଥିଲେ ଓ ବିଶାଳ ଗଂଗ ବାହିନୀର ସର୍ବୋଚ୍ଚ ସେନାପତି ପଦ ଲାଭ କରିଥିଲେ । ବୀରଙ୍କୁ ବୀରର ମର୍ଯ୍ୟାଦା ମିଳିଥିଲା । ଅନ୍ୟ ଐତିହାସିକ ମାନେ କହନ୍ତି ଯେ ଗଂଗ - କଲଚୁରୀ ସଂଗ୍ରାମ ବେଳେ ପରମାର୍ଦ୍ଦି ଦେବ କଲଚୁରୀ ପକ୍ଷ ପରିତ୍ୟାଗ କରି ଗଂଗ ମାନଙ୍କୁ ସାମରିକ ସହାୟତା ଯୋଗାଇଥିଲେ । ଏବଂ ତାହାର ପୁରସ୍କାର ସ୍ୱରୁପ ତାଙ୍କୁ ସେନାପତି ପଦ ଓ ଚନ୍ଦ୍ରିକା ଦେବୀ ମିଳିଥିଲା । ସେ ଯାହା ହେଉ ପରମାର୍ଦ୍ଦି ଦେବ ୧୨୨୦ ଖ୍ରୀ ପରେ ଗଂଗ ବାହିନୀର ସର୍ବୋଚ୍ଚ ସେନାପତି ପଦ ଲାଭ କରିଥିଲେ ଓ ଅନଙ୍ଗଭୀମଙ୍କ ସୁନ୍ଦରୀ ନୃତ୍ୟ - ଗୀତ - ଶାସ୍ତ୍ର ପ୍ରବୀଣା ଚନ୍ଦ୍ରିକା ଦେବୀଙ୍କୁ ବିବାହ କରିଥିଲେ । ସେନାପତି ପଦ ବ୍ୟତୀତ ତାଙ୍କୁ ଯାଜପୁର ଅଂଚଳର ପ୍ରଶାସକ ଭାବେ ମଧ୍ୟ ନିଯୁକ୍ତି ଦିଆଯାଇଥିଲ । ଚନ୍ଦ୍ରିକାଦେବୀ ଅନଙ୍ଗଭୀମ ଦେବଙ୍କ କନ୍ୟା ଥିଲେ ଓ ପ୍ରଥମ ନରସିଂହଦେବଙ୍କ ଭଗ୍ନୀଥିଲେ । ସେ ଜଣେ ନୃତ୍ୟଗୀତ ପ୍ରବୀଣା, ପ୍ରାଜ୍ଞୀ, ଧର୍ମପରାୟଣା ମହିଳା ଥିଲେ । ସେ ବିଷ୍ଣୁଙ୍କର ଉପାସିକା ଥିଲେ । ସେ ତାଙ୍କ ପତି ପରମାର୍ଦ୍ଦି ଦେବଙ୍କ ସ୍ମୃତିରେ ଅନନ୍ତ ବାସୁଦେବ ମନ୍ଦିର ୧୨୭୮ ମସିହାରେ ନିର୍ମାଣ କରିଥିଲେ । ଏଠାରେ ଉତ୍କୀର୍ଣ୍ଣ ଶିଳାଲେଖ ରେ ଚନ୍ଦ୍ରିକାଦେବୀଙ୍କ ଗୀତ - ନୃତ୍ୟକୁଶଳା ଓ ବାଲ୍ୟାବସ୍ଥାରୁ ବିଷ୍ଣୁଭକ୍ତ ଥିବାର ଉଲ୍ଲେଖ ଅଛି "ଗୀତାଜ୍ଞାଳୟ - ତାଳ- ନର୍ତ୍ତନକଳା - କୌଶଲ୍ୟ ଲୀଳାୟା ।

ବାଲ୍ୟାଦିଚ୍ୟୁତ-ଭକ୍ତି-ଭିତମିଦଂ ଭାନୁ ରୂପପ୍ରିୟେ" ଚନ୍ଦ୍ରିକାଦେବୀ ବୀରାଙ୍ଗନା, ନୃତ୍ୟଗୀତ ପ୍ରବୀଣା । ତାଙ୍କ ସ୍ୱାମୀ ଅନୁରକ୍ତି ର ପ୍ରତୀକ ଶିଳାବ୍ରହ୍ମ ନାମରେ ପରିଚିତ ଅନନ୍ତ-ବାସୁଦେବ ମନ୍ଦିର । ତାଙ୍କ ଭାଇ ନରସିଂହ ଦେବଙ୍କୁ ପ୍ରଭାବିତ କରି ଏ ମନ୍ଦିର

ନିଜ ଦିବଂଗତ ସ୍ୱାମୀ ପରମାର୍ଦ୍ଦିଦେବଙ୍କ ସ୍ମୃତିପାଇଁ ନିର୍ମାଣ କରିଥିଲେ । ସେଠାରେ କୃଷ୍ଣ - ବଳରାମ - ସୁଭଦ୍ରାଙ୍କ ପୂଜାର୍ଚ୍ଚନା ପାଇଁ ଉପଯୁକ୍ତ ବ୍ୟବସ୍ଥା ବି ଗ୍ରହଣ କରିଥିଲେ ।

ତୃତୀୟ ଅନଙ୍ଗଭୀମଦେବଙ୍କ ସମୟରେ ଗଂଗ ସାମ୍ରାଜ୍ୟର ବିସ୍ତାର ଦ୍ରୁତ ଗତିରେ ହୋଇ ପାରିଥିଲା । ତାଙ୍କର ଦକ୍ଷିଣାତ୍ୟ ଅଭିଯାନ ଗୁଡିକ ସର୍ବଦା ସଫଳ ହେଉଥିଲା । କାରଣ ସେନାପତି ଥିଲେ ଦକ୍ଷ ବୀର ପରମାର୍ଦ୍ଦି ଦେବ । ଅନଙ୍ଗଭୀମ ଦେବଙ୍କ ଜାମାତା ତାଙ୍କ ପରେ ପ୍ରଥମ ନରସିଂହ ଦେବ (୧୨୩୮-୧୨୬୪) ମସିହା ରେ ବାରଣାସୀ କଟକ ରେ ରାଜା ହେଲେ । ତାଙ୍କ ପିତାଙ୍କ ପରି ସେ ବିଚକ୍ଷଣ ବି ଥିଲେ । କିନ୍ତୁ ଅନଙ୍ଗଭୀମଦେବଙ୍କ ସମରନୀତି ଓ ନରସିଂହଦେବଙ୍କ ସମରନୀତି ମଧ୍ୟରେ ଗୋଟିଏ ମୌଳିକ ପାର୍ଥକ୍ୟ ଥିଲା । ଅନଙ୍ଗଭୀମଦେବ ପୂର୍ବ ଓ ଉତ୍ତର ଭାରତର ମୁସଲମାନ ଆକ୍ରମଣ କାରୀଙ୍କୁ ତଡିଦେଉଥିଲେ କିନ୍ତୁ କୌଣସି ମୁସଲମାନ ଉପରେ ଆକ୍ରମଣ କରୁନଥିଲେ । ନରସିଂହ ଦେବ ବାରମ୍ବାର ମୁସଲମାନୀ ଲୁଣ୍ଠନ ର ଏକ ଚିରସ୍ଥାୟୀ ସମାଧାନ କରିବାପାଇଁ, ବଂଗ ରାଜ୍ୟ ଉପରେ ଆକ୍ରମଣ କରିବାର ଯୋଜନା କରିଥିଲେ । ସୁଯୋଗ ବି ଥିଲା । ବଂଗର ସୁଲତାନ ଦିଲ୍ଲୀ ରେ ଚାଲିଥିବା ସିଂହାସନ ପାଇଁ ଗୃହଯୁଦ୍ଧର ସୁଯୋଗ ନେଇ ନିଜେ ରାଜ୍ୟ ବିସ୍ତାର କରି ସ୍ୱାଧୀନ ହେବାକୁ ଯୋଜନା କରୁଥିଲେ । ତେଣୁ ତାଙ୍କୁ ସେ ସମୟରେ କେନ୍ଦ୍ରୀୟ ସାହାଯ୍ୟ ମିଳିବାର ପ୍ରଶ୍ନ ନଥିଲା । ବଂଗର ନବାବ ଥିଲେ ତୁଘ୍ରିଲ - ତୁଘାନଖାଁ ୧୨୪୩ ଖ୍ରୀ ରେ ନରସିଂହ ଦେବଙ୍କ ନିର୍ଦ୍ଦେଶରେ ପରମାର୍ଦ୍ଦି ଦେବଙ୍କ ସାମରିକ ନେତୃତ୍ୱ ରେ ଉତ୍କଳ କୁ ବାରମ୍ବାର ଅଯଥା ରେ ଅସ୍ଥିର କରୁଥିବା ତୁଘ୍ରିଲ - ତୁଘାନ ଖାଁ ଙ୍କୁ ବିରୁଦ୍ଧରେ ସମରଭାଭିଯାନ ଆରମ୍ଭ ହୋଇଥିଲା ।

ଏ ଯୁଦ୍ଧ ର ଆଖିଦେଖା ବିବରଣୀ ଐତିହାସିକ ମିନ୍‌ହାଜ ଦେଇଛନ୍ତି । ତାଙ୍କ ବିରରଣୀ ରେ ସୂଚାଇଛନ୍ତି ଯେ ବଂଗର ସେନା ଉତ୍କଳ ସେନାଙ୍କ ସହିତ ପ୍ରାଥମିକ ଅବସ୍ଥାରେ ସାହାସର ସହିତ ଯୁଦ୍ଧ କଲେ, ପରେ ପରାଜୟ ବରଣ କଲେ ମୁସଲମାନ ସେନା ଓ ସେମାନଙ୍କର ନାୟକ ତୁଘ୍ରିଲ ତୁଘାନ ଖାଁ ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ । ବହୁଧନ ଜନ ବି ସେମାନଙ୍କୁ ହରାଇବାକୁ ପଡିଲା ।

ପରମାର୍ଦ୍ଦିଦେବଙ୍କ ନେତୃତ୍ୱରେ ପ୍ରଥମଥର ପାଇଁ ଉତ୍କଳ ସେନା ଆମ ପାରଂପାରିକ ରାଷ୍ଟ୍ରସୀମା କଂସାଇ ନଦୀ /କପିଶା ନଦୀ ଅତିକ୍ରମ କରି ବଂଗ ଲୁଣ୍ଠନ କରିବାକୁ ପ୍ରଥମ ସୌଭାଗ୍ୟ ଲାଭ କଲେ । ଏ ସୌଭାଗ୍ୟ ର ରୂପକାର ପରମବୀର ପରମାର୍ଦ୍ଦି ଦେବ ।

ପରମାର୍ଦ୍ଦି ଦେବ ନରସିଂହ ଦେବଙ୍କ ସେନାବାହିନୀର ମୁଖ୍ୟ ପଦ

ଅନଙ୍ଗଭୀମଦେବଙ୍କ ପରେ ମଧ ବଜାଇ ରଖଲେ । ତାଙ୍କ ଅତିରିକ୍ତ ଦାୟୀତ୍ୱ ଥିଲା ଯାଜପୁର ଦୁର୍ଗ ଓ ଯାଜପୁର ଅଂଚଳର ପ୍ରଶାସନ ର କାର୍ଯ୍ୟ । ସେ ପ୍ରଶାସନିକ ଓ ସାମରିକ ଯୋଜନା ପାଇଁ ଯାଜପୁର ରେ ଅବସ୍ଥାନ କରୁଥିଲେ ଓ ସେନା ଶିବିର ମାନ ଯାଜପୁର ଅଂଚଳ ରେ ବିକ୍ଷିପ୍ତ ଭାବେ ସ୍ଥାପିତ ହୋଇଥିଲା । କେତେକ ଗ୍ରହଣଯୋଗ୍ୟ ଭୌଗୋଳିକ କାରଣ ଯୋଗୁଁ ଯାଜପୁର ଙ୍କୁ ସେତେ ବେଳେ ସାମରିକ ମୁଖ୍ୟାଳୟ ର ଗୌରବ ମିଳିଥିଲା । ଯାଜପୁର ପ୍ରାଚୀନ ତୋଷାଳୀ ଓ ସୋମବଂଶୀ ଉତ୍କଳ ର ରାଜଧାନୀ ଥିଲା । ଯାଜପୁରର ପ୍ରଶାସକ ଓଡିଶା ବାହିନୀର ସର୍ବୋଚ୍ଚ ସେନାପତି ଥିଲେ । ଉତ୍ତରପୂର୍ବ ଭାରତରୁ ରାଜମାର୍ଗ ଦକ୍ଷିଣ ଭାରତକୁ ଏହି ଅଂଚଳ ଦେଇ ଯାଇଥିଲା । ସେତେବେଳେ ଯାଜପୁରଙ୍କୁ ଜଳପଥ ର ମଧ ସୁଯୋଗ ଥିଲା । ଚାନ୍ଦବାଲି ବନ୍ଦର ଦେଇ ବୈତରଣୀ ର ସିଦ୍ଧେଶ୍ୱର ଘାଟ ଯାଏ ବଡ ବଡ ପୋତ ଯାତାୟତ କରି ପାରୁଥିଲା । ନଦୀ ବେଷ୍ଟିତ ଏ ସ୍ଥାନ ଟି ଶସ୍ୟ ଶ୍ୟାମଳା ଓ ଜନବସତି ପୂର୍ଣ୍ଣ ଥିଲା । ଏହାର ଜଳବାୟୁ ସ୍ୱାସ୍ଥ୍ୟକର ଥିଲା ଓ ମା ବିରଜା ଙ୍କ ପବିତ୍ର ପୀଠପୂର୍ବେ ଏହା ଧର୍ମକେନ୍ଦ୍ର ବି ଥିଲା । ଉପରୋକ୍ତ କାରଣ ରୁ ଗଂଗବଂଶୀ ମାନେ ଯାଜପୁରକୁ ମହତ୍ୱ ଦେଇଥିଲେ । ପଣ୍ଡିତ ବିନାୟକ ମିଶ୍ର ଓଡିଶାର ନୂତନ ଇତିହାସ ପୁସ୍ତକରେ ପରମାର୍ଦ୍ଦି ଦେବଙ୍କ ପରିଚୟ ଦେବାକୁ ଯାଇଁ କହିଛନ୍ତି । "ନରସିଂହ ଦେବଙ୍କର ଚନ୍ଦ୍ରାଦେବୀ ନାମକ ଏକ ଭଉଣୀ ଥିଲେ । ସେ ଛତିଶଗଡର ହୟିହୟ ବଂଶର ପରମାର୍ଦ୍ଦି ଦେବଙ୍କୁ ବିହାହ କରିଥିଲେ । ଏହି ପରମାର୍ଦ୍ଦି ଦେବ ସାମନ୍ତରାୟ ଉପାଧି ଗ୍ରହଣ କରିଥିଲେ । ଓ ଯାଜପୁର ଅଞ୍ଚଳ ଶାସନ କର୍ତ୍ତା ଭାବେ ନିଯୁକ୍ତ ହୋଇଥିଲେ" । ସେ ୧୨୪୩ ଖ୍ରୀ ରେ ବଂଗର ଅମୀର ତୁଘାନ ଖାଁ ସହିତ ଯୁଦ୍ଧ କରିବାକୁ ଯାଇଥିଲେ ସେ ସମୟରେ ଓଡିଶାର ନାମ ଯାଜନଗର ଓଡିଶା ବୋଲି ବିଦେଶୀ ବିଶେଷ କରି ମୁସଲମାନ ଐତହାସିକ ମାନେ ଲେଖିଛନ୍ତି । ଏହି ନାମରୁ ଯାଜପୁରର ସୁଖ୍ୟାତିର ପରିଚୟ ମିଳେ ପରମାର୍ଦ୍ଦି ଦେବଙ୍କ ନେତୃତ୍ୱରେ ତା ୧୪.୩.୧୨୪୩ ମସିହାରେ ଯେଉଁ ପ୍ରଥମ ବଂଗ ଅଭିଯାନ ହୋଇଥିଲା ତାର ଫଳ ସ୍ୱରୂପ ଉତ୍କଳ ଯଥେଷ୍ଟ ସାମରିକ ମର୍ଯ୍ୟାଦା ପାଇଥିଲା ଓ ବଂଗରୁ ମଧ ଅତୁଳନୀୟ ଧନ ସଂପଦ ଆଣି ପାରିଥିଲା । ଦୀର୍ଘ ଦିନର ଲୁଣ୍ଠନ କାରୀଙ୍କ ଠାରୁ ସର୍ବପ୍ରଥମ ଧନ ଅପହରଣ କରି ଆଣିଥିଲେ ପରମବୀର ପରମାର୍ଦ୍ଦି ଦେବ । ଓଡିଶା ବାହିନୀ ତାଙ୍କ ନେତୃତ୍ୱ ରେ ବଂଗର ଲକ୍ଷ୍ମଣାବତୀ ନଦୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରି ପାରିଥିଲେ । ଏ ଯୁଦ୍ଧର ବିବରଣୀ ତବାକତ୍-ଇ-ନିସିରି ରେ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଛି ବୋଲି ପଣ୍ଡିତ ବିନାୟକ ମିଶ୍ର ସୂଚନା ଦେଇଛନ୍ତି । ଏ ଯୁଦ୍ଧରେ ନାମ କଂସାଇ ଯୁଦ୍ଧ ର ନାମ ଦେଇ ସେ ସୁନ୍ଦର ଭାବେ ପରମାର୍ଦ୍ଦି ଦେବଙ୍କ ସମରକୌଶଳ ବର୍ଣ୍ଣନା କରିଛନ୍ତି । ତୁଘାନ

ଖାଁ ସସୈନ୍ୟେ ଆକ୍ରମଣ କରି ଆସୁଥିବାର ଖବର ପାଇ ପରମାର୍ଦ୍ଧିଦେବ ଉତ୍କଳ ସେନାଙ୍କୁ ପ୍ରତ୍ୟାବର୍ତ୍ତନ ପାଇଁ ନିର୍ଦ୍ଦେଶ ଦେଲେ ତୁଘାନ ଖାଁ ମନେକଲେ ତାଙ୍କ ଭୟରେ ଉତ୍କଳ ସେନା ଫେରିଗଲେ । ତୁଘାନ ଖାଁ ଆନନ୍ଦିତ ହୋଇ ସେନା ଶିବିର ରେ ମଦ୍ୟପାନ ଆଦି ଆମୋଦ ପ୍ରମୋଦ ରେ ଲିପ୍ତ ରହିଲେ । ଏ ସୁଯୋଗ ରେ ପରମାର୍ଦ୍ଧି ଦେବ ପଛପଟୁ ଶିବିର କୁ ଆକ୍ରମଣ କଲେ । ସେ ବହୁ ଶତ୍ରୁ ସେନାଙ୍କୁ ନିହତ କଲେ । ଅନେକ ବି ଆହତ ହେଲେ । ଫଳରେ ପ୍ରାଣ ରକ୍ଷା ପାଇଁ ତୁଘାନ ଖାଁ ତାଙ୍କ ରାଜଧାନୀ ଲକ୍ଷ୍ନୌତି କୁ ପଳାୟନ କଲେ । ପରମବୀର ଙ୍କ ଏହି ଐତିହାସିକ ସମର ପ୍ରତାରଣା ଉତ୍କଳ ବାହିନୀ କୁ ଗୌରବ ମଣ୍ଡିତ କରିଥିଲା ଡଃ ସତ୍ୟ ନାରୟଣ ରାଜଗୁରୁଙ୍କ ପ୍ରବନ୍ଧ (The Military Glory of Gangas) ରେ ଏ ଯୁଦ୍ଧ ସମ୍ବନ୍ଧରେ ଅନୁରୂପ ମତ ପ୍ରଦାନ କରିଛନ୍ତି The leader of the force of Jajnagar was a person by name Samantar / Samanta Ray the son - in - low of the Rai who during the time of Mallick - Izz - Uddin - Tughril - i - Tughan Khan had advanced to the bank of the river Laxamanavati xx we got beautiful description of war even in the muslim annals Talagut - i - Nasiri. The above battle was fought in Bengal inthe 14th, March 1243 A.D. was most probabully Led by Panamadhi Dev the son - in - Law of the Raj Ananga Vima Dev. He Belongs to Haihaya Dynesty.

- Orissa REview 1982 Dr. S.N. Rajguru. I

ଖ୍ରୀ ୧୨୪୫ ରେ ପୁଣିଥରେ ବଂଗ ଆକ୍ରମଣ କରିବାକୁ ପରମାର୍ଦ୍ଧି ଦେବଙ୍କୁ ନରସିଂହ ଦେବ ନିର୍ଦ୍ଦେଶ ଦେଇଥିଲେ । ଉତ୍କଳ ବାହିନୀ ପୂର୍ବପରି ବିଜୟୋଲ୍ଲାସରେ କଂସାଇ ନଦୀ ପାର ହୋଇ ଲକ୍ଷ୍ମଣାବତୀ ଅବରୋଧ କରି ରଖିଥିଲେ । ଏ ଯୁଦ୍ଧରେ ବଂଗ ସେନାପତି କରି ମୁଦ୍ଦିନ ଲାଗ୍ରି ଶୋଚନୀୟ ଭାବେ ପରାଜିତ ହୋଇ ମୃତ୍ୟୁ ବରଣ କଲେ ଓ ବଂଗ ଅମୀର ତୁଗ୍ରିଲ ତୁଘାନ ଖାଁ ଦିଲ୍ଲୀ ଓ ଅଯୋଧ୍ୟାରୁ ସାମରିକ ସାହାଯ୍ୟ ଅଂଶରେ ଲକ୍ଷ୍ନୌତି ଦୁର୍ଗରେ ଅପେକ୍ଷା କରି ରହିଥିଲେ । ତାଙ୍କ ଅପେକ୍ଷା ସଫଳ ହୋଇଥିଲା ଅଯୋଧ୍ୟା ର ନବାବ କରିମୁଦ୍ଦିନ ତିମୁର ଦିଲ୍ଲୀ ସୁଲତାନ ଗୟା ସୁଦ୍ଦିନଙ୍କ ନିର୍ଦ୍ଦେଶ କ୍ରମେ ସେନା ଚାଳନା କରିଥିଲେ । ବାଧ୍ୟ ହୋଇ ପରମାର୍ଦ୍ଧି ଦେବ କୁ ପ୍ରତ୍ୟାବର୍ତ୍ତନ କରିବାକୁ ହେଲା ଐତିହାସିକ ମାନେ ଏ ପଛଘୁଞ୍ଚା ପାଇଁ ପ୍ରବଳ ବର୍ଷା ହିଁ ଅନ୍ୟତମ କାରଣ ବୋଲି ଉଲ୍ଲେଖ କରିଛନ୍ତି । ନରସିଂହ ଦେବଙ୍କ ଦ୍ୱିତୀୟ ଅଭିଜାନ ଅସଫଳ ହେଲେ ମଧ୍ୟ ବଂଗର ୨ଟି ଅଂଚଳ ଯଥା ରାଢ ଓ ବରେନ୍ଦ୍ର ଅଭିଜାନ କେନ୍ଦୁପାଟଣା ଶାସନ ରେ ବର୍ଣ୍ଣିତ ହୋଇଛି ।

"ରାଢ - ବାରେନ୍ଦ୍ର - ଯବନୀ ନୟନାଞ୍ଜ ନାଶ୍ରୁ ପୁରେଶ ଦୂରବିନି ବିଶିତ କାଳିମା ଶ୍ରୀଃ
ତଦ୍ ବିପ୍ରଲମ୍ଭ କରୁଣାଭୂତ ନିସ୍ତରଙ୍ଗା
ଗଂଗାପି ନୂନମ ଯୁନା ଯମୁନା ଧୂନା ଭୂତ ।
ରାଢ ଓ ବରେନ୍ଦ୍ର ର ଯବନୀ ମାନଙ୍କର କ୍ରନ୍ଦନ ଫଳରେ ସେମାନଙ୍କ ଚକ୍ଷୁରୁ ଅଞ୍ଜନ ଧୌତ ହୋଇ ଯେଉଁ ଅଶ୍ରୁନିର୍ଗତ ହେଲା, ତାହାଦ୍ୱାରା ଗଂଗାର ଶ୍ୱେତଜଳ ବହୁଦୂର ପର୍ଯ୍ୟନ୍ତ କୃଷ୍ଣବର୍ଣ୍ଣ ଧାରଣ କରିଥିଲା ଓ ତରଙ୍ଗଶୂନ୍ୟ ହୋଇଥିଲା । ସତେ ଯେପରି ନରସିଂହ ଦେବଙ୍କ କୃତିତ୍ୱ ରେ ଗଂଗା ନଦୀ କୃଷ୍ଣନୀରା ଯମୁନା  ନଦୀରେ ପରିଣତ ହୋଇଥିଲା । ଏ ତାମ୍ର ଶାସନର ଗୌରବ ନରସିଂହଙ୍କ ପ୍ରସସ୍ତି ହୋଇପାରେ  କିନ୍ତୁ ଏହାର ସଫଳତା ପଛରେ ପରମାର୍ଦ୍ଦି ଦେବ ବଳୀଦାନର କାହାଣୀ ଖୁବ୍ ବେଦନାଦାୟକ । ତୁଘ୍ରିଲ ଖାଁ ଙ୍କ ସହିତ ଲଢି ଲଢି ପରମାର୍ଦ୍ଦି ଦେବ କେବଳ ବିଜୟ ଗୌରବ ଆଣିନଥିଲେ ବରଂ ଓଡିଶା ର ସାମ୍ରାଜ୍ୟ ବିସ୍ତାର ସହିତ ଅପରିମିତ ଧନରତ୍ନ ସଂଗ୍ରହ କରିପାରିଥିଲେ । ୧୨୭୨ ଖ୍ରୀ ରେ ଦିଲ୍ଲୀ ର  ସୁଲତାନ ତୁଘ୍ରିଲ ଖାଁ ଙ୍କୁ ଗାଦିଚ୍ୟୁତ କରିଥିଲେ ଓ ଉତ୍କଳର ଚିରଶତ୍ରୁ ତୁଘ୍ରିଲ ଖାଁ ଲକ୍ଷ୍ନୌତି ରୁ ପଳାୟନ କରି ଯାଜନଗର ରେ ଆଶ୍ରୟ ନେଇଥିଲେ ଶତ୍ରୁ ପ୍ରତି ଏତାଦୃଶ ଉଦାରତା ଆମ ସଂସ୍କୃତିର ଏକ ବୈଶିଷ୍ଟ୍ୟ ।

ଖ୍ରୀ ୧୨୪୬ ରେ ବଂଗ ଶାସନକର୍ତ୍ତା ଓ ତାଙ୍କ ସେନାପତି ୟୁକ୍‌ବୁକ୍ ଖାଁ ଯାଜପୁର କୁ ପ୍ରତିଶୋଧ ପରାୟଣ ହୋଇ ଆକ୍ରମଣ କରିଥିଲେ । ପରମାର୍ଦ୍ଦି ଦେବଙ୍କ ନେତୃତ୍ୱରେ  ବିଭିନ୍ନ ସ୍ଥାନରେ ବିଭିନ୍ନ ରଣକୌଶଳ ମାଧମରେ ଶତ୍ରୁ ୟୁକ୍‌ବୁକ୍ ଖାଁ ଙ୍କ ସହିତ ସଂଗ୍ରାମ ହୋଇଥିଲା । ପ୍ରଥମ ଯୁଦ୍ଧରେ ପରମାର୍ଦ୍ଦି ଦେଙ୍କ ଅପୂର୍ବ ସାହସିକତା ବଳରେ ୟୁକ୍‌ବୁକ୍ ଖାଁ ଙ୍କୁ ପରାଜୟ ବରଣ କରିବାକୁ ପଡିଥିଲା । ତାଙ୍କ ଠାରୁ ଅମାପ ଧନ ସଂପଦ ସହ ଗୋଟିଏ ଧଳାହାତୀ ଅପହରଣ କରି ନେଇ ଆସିଥିଲେ । ସେତେବେଳେ ଗଜାରୋହୀଙ୍କ ଗୁରୁତ୍ୱ ଯୁଦ୍ଧ ପାଇଁ ଅଧିକ ଥିଲା ଗୋଟିଏ ହାତୀ ସହ ୫୦୦ ଅଶ୍ୱସେନାଙ୍କୁ ତୁଳନା କରାଯାଉଥିଲା । ଉତ୍କଳ ର ଗଜାରୋହି ବାହିନୀ ପରମାର୍ଦ୍ଦି ଦେବଙ୍କ ବିଜୟର କାହାଣୀ ରେ ଏକ ମୁଖ୍ୟ ଅଂଶ । ଯାଜପୁର ରେ ଅନେକ ସୈନ୍ୟ ଓ ବହୁତ ହାତୀ ସର୍ବଦା ସଜାଗ ହୋଇ ରହୁଥିବାର ବର୍ଣ୍ଣନା ଇତିହାସ ରୁ ମିଳେ ।

ଖ୍ରୀଷ୍ଟାବ୍ଦ ୧୨୫୫ ରେ ମୟୁରଭଞ୍ଜ ଅମର୍ଦ୍ଦା ଠାରେ ବଂଗ ବାହିନୀ ଓ ଉତ୍କଳ ବାହିନୀ ର ସଂଘର୍ଷ ହୋଇଥିଲା । ସେ ଯୁଦ୍ଧ ରେ ଉତ୍କଳର ସେନା ନାୟକ ଥିଲେ ମଧ ପରମାର୍ଦ୍ଦି ଦେବ । ସେହି ଅମର୍ଦ୍ଦା ଯୁଦ୍ଧ ହିଁ ଥିଲା ପରମ ବୀରଙ୍କ ଶେଷଯୁଦ୍ଧ । ସେ ଯୁଦ୍ଧ କ୍ଷେତ୍ରରେ ଉତ୍କଳ ର ସର୍ବୋଚ୍ଚ ସେନାପତି ପରମବୀର ପରମାର୍ଦ୍ଦି ଦେବ ଶେଷ ନିଶ୍ୱାସ

ତ୍ୟାଗ କରିଥିଲେ । ତାଙ୍କର ବୀରଗତି ହିଁ ତାଙ୍କୁ ଇତିହାସ ରେ ଅମରତ୍ୱ ପ୍ରଦାନ କରିଥିଲ । ସେ ଯୁଦ୍ଧ କ୍ଷେତ୍ର ରେ ଅତିଶୟ ବୀରତ୍ୱ ଓ ସାହସ ଦେଖାଇଥିଲେ । ତାଙ୍କ ରଣ କୌଶଳ ଓ ସାହସ କୁ ପ୍ରତିପକ୍ଷ ସେନାପତି ୟୁକ୍‌ବୁକ୍ ଖାଁ ମଧ ଉଚ୍ଚ ପ୍ରଶଂସା କରିଥିଲେ । ସେ ପ୍ରଥମ ୩ ଥର ପରାଜୟ ବରଣ କରି ଶେଷଥର ଦିଲ୍ଲୀ ସେନାବାହିନୀ ସହାୟତା ରେ ବିଜୟ ଲାଭ କରିଥିଲେ । ପରମାର୍ଦ୍ଦି ଦେବଙ୍କ ବୀରଗତି ପରେ ମଧ ଉତ୍କଳ ସେନା ୟୁକ୍‌ବୁକ୍ ଖାଁ ଙ୍କୁ ଉମର୍ଦ୍ଧା (ଉମର୍ଦ୍ଧନ) ଦୂର୍ଗ ଅତିକ୍ରମ କରିବାକୁ ସୁଯୋଗ ଦେଇନଥିଲା ବଂଗର ଅଭ୍ୟାନ୍ତରୀଣ ରାଜନୀତି ପାଇଁ ଅବଶ୍ୟ ସେଦିନ ୟୁକ୍‌ବୁକ୍ ଖାଁ ପ୍ରତ୍ୟାବର୍ତ୍ତନ କରିଥିଲେ । ଫେରିଲା ବେଳେ ଅନେକ ହାତି ଓ ଧନସଂପଦ ଲୁଟି ନେଇଥିଲେ । ସେତେବେଳେ ପରମାର୍ଦ୍ଦି ଦେବଙ୍କ ସାମରିକ ମୁଖ୍ୟ କାର୍ଯ୍ୟାଳୟ ମୟୁରଭଞ୍ଜର ଉମର୍ଦ୍ଧନ ଦୂର୍ଗ ଥିଲା ।

ନରସିଂହ ଦେବଙ୍କ ବଂଗ ବିଜୟ ଗାଥା ପଛରେ ଥିବା ବଳିଷ୍ଠ କାରଣ କୁ ବିଶ୍ଳେଷଣ କଲେ ସବୁଥିରେ ପରମାର୍ଦ୍ଦି ଦେବଙ୍କ ପଦାଙ୍କ ସ୍ପଷ୍ଟ ଭାବେ ଜଣାପଡେ । ମୁଖ୍ୟ କାରଣ ଗୁଡିକ ହେଲା (କ) ନରସିଂହ ଦେବ ସର୍ବଦା ଶତ୍ରୁମାନଙ୍କ ବିରୁଦ୍ଧରେ ଆକ୍ରମଣାତ୍ମକ ମନୋଭାବ ପୋଷଣ କରୁଥିଲେ ଫଳରେ ଶତ୍ରୁମାନେ ଆତ୍ମରକ୍ଷା ପାଇଁ ବ୍ୟସ୍ତ ରହି ସାମ୍ରାଜ୍ୟ ବିସ୍ତାର ଚିନ୍ତା କରିବାକୁ ସମୟ ପାଉନଥିଲେ । (ଖ) ଓଡିଶାର ସେନା ସୁଗଠିତ ଥିଲା ଓ ସୀମାବର୍ତ୍ତୀ ଅଂଚଳ ରେ ଦୂର୍ଗମାନ ପ୍ରତିଷ୍ଠା କରାଯାଇ ସେମାନଙ୍କୁ ସଜାଗ ରଖାଯାଉଥିଲା (ଗ) ଉତ୍କଳ ସେନା ବାହିନୀ ରେ ବହୁ ସଂଖ୍ୟକ ହସ୍ତୀ ବ୍ୟବହୃତ ହେଉଥିଲେ ଅନଙ୍ଗଭୀମ ଦେବଙ୍କ ସୈନ୍ୟ ବାହିନୀ ରେ ୨୫୦୦ ଘର ହାତୀ, ୫୦ ହଜାର ଅଶ୍ୱାରୋହୀ, ୭୫ ହଜାର ପଦାତିକ ଯୋଦ୍ଧା ଥିଲେ । ଏହି ୭୫ ହଜାର ପଦାତିକ ଙ୍କ ମଧ୍ୟରୁ ୨୫ ହଜାର ବେତନଭୋଗୀ ସଂରକ୍ଷିତ ସେନାଥିଲେ ଓ ଅବଶିଷ୍ଟ ୫୦ ହଜାର କୃଷିଜୀବୀ ସେନା ଥିଲେ (ଘ) ଗଂଗମାନଙ୍କର ସାମରିକ କୌଶଳ ଓ ନେତୃତ୍ୱ ଉଚ୍ଚମାନର ଥିଲା । ଗଂଗ ମାନଙ୍କର ସାମରିକ ଯୋଜନା, ନେତୃତ୍ୱ ଯୁଦ୍ଧ ପରିଚାଳନା କ୍ଷେତ୍ରରେ ସର୍ବୋଚ୍ଚ ସେନାପତି ପରମବୀର ପରମାର୍ଦ୍ଦି ଦେବଙ୍କ ଅବଦାନ ସର୍ବଦା ସ୍ମରଣୀୟ ।

ଶାନ୍ତି ସମୟରେ ଯାଜପୁର ଅଂଚଳର ଶାସନ ପରିଚାଳନା ସେ କରୁଥିଲେ ଓ ଯୁଦ୍ଧ ସମୟରେ କେତେବେଳେ ରାଇବଣିଆ ତ କେତେବେଳେ ଉମର୍ଦ୍ଧନ ଦୂର୍ଗରେ ଅସ୍ଥାୟୀ ସାମରିକ କାର୍ଯ୍ୟାଳୟ ଖୋଲି ସୀମାନ୍ତ ବାହିନୀ ର ତଦାରଖ କରୁଥିଲେ । ହାତୀ ପାଇଁ ଯାଜପୁର ଅଞ୍ଚଳ ପ୍ରସିଦ୍ଧ ଥିଲା । ଯାଜପୁର ଉପରେ ଯେତେଥର ବୈଦେଶିକ ଆକ୍ରମଣ ହୋଇଛି ତାର ଅନ୍ୟତମ କାରଣ ହାତୀ ଅପହରଣ କରିବା ୟୁକ୍‌ବୁକ୍ ଖାଁ

ଗୋଟିଏ ହାତୀ ଅପହରଣ କଲେ , ୩ଟି ହାତୀ ଦେଇ ତୃତୀୟ ଭାନୁଦେବ ଫିରୋଜ ଶାହ ଙ୍କ ସହିତ ସନ୍ଧି କରିଥିଲେ । ୪ର୍ଥ ନରସିଂହ ଦେବ ଯାଜପୁର ରେ ୪ଟି ହାତୀ ଦେଇ ହୁସାନୁଦ୍ଦିନ ଙ୍କ ଠାରୁ ମୁକ୍ତ ହେଲେ । ଉଲୁଘ ଖାଁ ଯାଜପୁର ଆକ୍ରମଣ କରି ୪୦ଟି ହାତୀ ନେଇ ଫେରିଗଲେ । ଏହିପରି ଅନେକ ଐତିହାସିକ ଉଦାହରଣ ମାନ ଦିଆଯାଇପାରେ । ପରମବୀରଙ୍କ ବଂଗ ବିଜୟର ସଂଗୃହୀତ ଅର୍ଥ, ସୁନା ଆଦି ଧନ ସଂପତ୍ତିକୁ ନରସିଂହ ଦେବ ବିଳାସବ୍ୟସନ ରେ ବ୍ୟୟନକରି ଏକ କାଳଜୟୀ କିର୍ତ୍ତୀ ଉତ୍କଳରେ ପ୍ରତିଷ୍ଠା କରିଛନ୍ତି । ଡଃ ଯଜ୍ଞକୁମାର ସାହୁଙ୍କ ମତରେ । ବଂଗରାଜ୍ୟ ଲୁଣ୍ଠନ କରି ପ୍ରଥମ ନରସିଂହ ଦେବ ଯେଉଁ ଅପରିମିତ ସମ୍ପତ୍ତି ଲାଭ କରିଥିଲେ, ସେ ତାହାର ସଦୁପଯୋଗ କରି କୋଣାର୍କ ରେ ଏକ ଅତୁଳନୀୟ ମନ୍ଦିର ସୂର୍ଯ୍ୟ ଦେବତା ଙ୍କ ପାଇଁ ନିର୍ମାଣ କରିଥିଲେ । ନରସିଂହ ଦେବ କୋଣାର୍କ ମନ୍ଦିର ପାଇଁ ଏ ମାଟିର ଅମର ସମ୍ରାଟ, କିନ୍ତୁ ବଂଗ ଲୁଣ୍ଠନ ପାଇଁ ପରମ ଓ ଚରମ ତ୍ୟାଗ କରିଥିବା ସେନାନାୟକ ଇତିହାସ ରେ ଆଜି ଅନାଲୋଚିତ ।

"ପରମାର୍ଦ୍ଧି ଦେବଙ୍କ ଅକାଳ ବିୟୋଗ ତାଙ୍କ ପତ୍ନୀ ଚନ୍ଦ୍ରିକା ଦେବୀଙ୍କୁ ବ୍ୟଥିତ କରିଥିଲା । ସେ ନରସିଂହ ଦେବଙ୍କ ସହାୟତା ରେ ଭୁବନେଶ୍ୱର ଠାରେ ଖ୍ରୀ ୧୨୭୮ ରେ ଅନନ୍ତ ବାସୁଦେବ ମନ୍ଦିର ନିର୍ମାଣ କରିଥିଲେ । ସେ ଥିଲେ ବୈଷ୍ଣବୀ । ଭୁବନେଶ୍ୱର ଶୈବ ପୀଠରେ ଅନନ୍ତ-ବାସୁଦେବ ମନ୍ଦିର ଥିଲା ଏକ ମାତ୍ର ବିଷ୍ଣୁମନ୍ଦିର । ସେ ମନ୍ଦିର ପରମାର୍ଦ୍ଧି ଦେବଙ୍କ ସ୍ମୃତିକୁ ଅମର କରିରଖିଛି । ସେହି ମନ୍ଦିରରେ ଚନ୍ଦ୍ରିକା ଦେବୀଙ୍କ ଦ୍ୱାରା ପ୍ରଦତ୍ତ ମୂଳ ଶିଳାଲେଖ ଟି ବର୍ତ୍ତମାନ ଲଣ୍ଡନ ମ୍ୟୁଜିୟମ ରେ ଅଛି ଓ ସେହି ସ୍ଥାନରେ ଏକ ବଂଗୀୟ ବ୍ରାହ୍ମଣ ଭବଦେବ ଭଟ୍ଟଙ୍କ ପ୍ରଦତ୍ତ ଶିଳା ଲେଖ ଟି ଦୃଷ୍ଟି ଗୋଚର ହୁଏ । କିନ୍ତୁ ଚନ୍ଦ୍ରିକା ଦେବୀଙ୍କ ପ୍ରଦତ୍ତ ଅନନ୍ତ ବାସୁଦେବ ମନ୍ଦିରର ମୂଳ ଶିଳା ଲେଖ ରେ ପରମାର୍ଦ୍ଧି ଦେବଙ୍କ ସମ୍ବନ୍ଧ ରେ ନିମ୍ନ ମତେ ବର୍ଣ୍ଣିତ ହୋଇଛି । ଡଃ ଭଗବାନ ପଣ୍ଡା - ପ୍ରବନ୍ଧ ଓଡିଆ ସମର ସାହିତ୍ୟ, କୋଣାର୍କ ପତ୍ରିକା ।

ସ କ୍ରୀଡା ମନୟା ବିଧାୟ ବିବିଧରାଗାନୁବନ୍ଧୋତ୍ସବାଂ
ପତ୍ନ୍ୟା ବୀର ନୃସିଂହଦେବ ନୃପତେ ଦ୍ୱୈଷ୍ୟାନରଣେ ରଦ୍ୟତଃ
ଦଦ୍ୱାତାନ ସୁରଲୋକ ଗାନପି ରୁଷା ଛେତୁଂ ସ୍ୱୟଂ ସ୍ୱର୍ଯ୍ୟଯୌ
ସନ୍ୟୈଃସୌ ପରମାର୍ଦ୍ଧି ଦେବ ସୁଭଟଃ କୀର୍ତ୍ତି ସମୁଲ୍ଲାସହମ ।
ବୀର ପରମାର୍ଦ୍ଧି ଦେବଙ୍କ ସ୍ୱର୍ଗପ୍ରାପ୍ତି ତାଙ୍କ ମୃତଶତ୍ରୁ ମାନଙ୍କୁ ଅନୁସରଣ କରିବା

କାରଣ ରୁ ହୋଇଛି ବୋଲି ଚମତ୍କାର ଭାବେ ବର୍ଣ୍ଣିତ । ପରମାର୍ଦ୍ଧି ଦେବ, ଗଂଗ ରାଜା ଅନଙ୍ଗଭୀମ ଦେବଙ୍କ ସହିତ ଗଂଗ ଓ କଲଚୁରୀ / ହୈଦୟ ବଂଶର ଯୁଦ୍ଧ ପ୍ରସଂଗ ରୁ ଉତ୍କଳ ରାଜନୀତି କୁ ପ୍ରବେଶ କରିଥିଲେ । ଅନଙ୍ଗଭୀମ ଦେବଙ୍କ ଜାମାତା ଭାବେ ପ୍ରଥମ ନରସିଂହ ଦେବଙ୍କ ଭଗ୍ନୀପତି ଭାବେ ନିଜର କର୍ତ୍ତବ୍ୟକୁ ବିଶ୍ୱାସ ର ସହିତ ପାଳନ କରିଆସିଛନ୍ତି । ସେ ସର୍ବୋଚ୍ଚ ସେନାପତି ଓ ଉତ୍କଳ ର ଏକ ସମୃଦ୍ଧ କ୍ଷେତ୍ର ଯାଜପୁର ର ପ୍ରଶାସକ ରହି କ୍ଷମତା ଲାଭ କରିବାକୁ ଇଛା କରିନଥିଲେ । ତାଙ୍କ ଜୀବନ କାଳ କେବଳ ଉତ୍ସର୍ଗୀକୃତ କର୍ମ ର ସମବାୟ । ତ୍ୟାଗ ହିଁ ତ୍ୟାଗ । ଅତୀତ ରେ ରାଜା ମାନଙ୍କୁ ଯୁଦ୍ଧ କ୍ଷେତ୍ରରେ ରହି ନିଜେ ଯୁଦ୍ଧ କରିବାର ଦୃଷ୍ଟାନ୍ତ ମିଳେ । ଭୌମକର ବଂଶୀ, ସୋମବଂଶୀ ଓ ଖୋଦ୍ ଗଂଗବଂଶୀ ରାଜାମାନଙ୍କୁ ଯୁଦ୍ଧ କ୍ଷେତ୍ରରେ ଲଢ଼ିବାକୁ ପଡୁଥିଲା ସ୍ୱୟଂ ଅନଙ୍ଗଭୀମ ଦେବଙ୍କୁ ମଧ କଲଚୁରୀ ଯୁଦ୍ଧରେ ଅସ୍ତ୍ର ହସ୍ତରେ ଯୁଦ୍ଧ କରିବାର ବର୍ଣ୍ଣନା ଅଛି । କିନ୍ତୁ ପ୍ରଥମ ନରସିଂହ ଦେବଙ୍କୁ ଯୁଦ୍ଧ କ୍ଷେତ୍ରକୁ କମ୍ ଯିବା କୁ ପଡୁଥିଲା । ସେ ଯୁଦ୍ଧ ଓ ସନ୍ଧିର ନିୟନ୍ତ୍ରକ ଥିଲେ କାରଣ ତାଙ୍କ ସେନାବାହିନୀ ର ନେତୃତ୍ୱ ନେଉଥିଲେ ତାଙ୍କ ପ୍ରାଣପ୍ରିୟ ଭଗ୍ନୀପତି ବିଶ୍ୱସ୍ତ ବୀର ପରମାର୍ଦ୍ଧି ଦେବ । ଡଃ ସତ୍ୟନାରାୟଣ ରାଜଗୁରୁଙ୍କ ଭାଷାରେ । Panamadhi Dev was entitled Samantaray. He belongs to the Haihaya dynestry. Owing to his various performance in the bettle field, Narasingh Dev (1) has brother - in - law appointed him to attack Laxamanavati, the muslim capital of Bengal.

- The military glory of Gangas - Orissa Review.

ଅତୀତ ରେ କ୍ଷମତା ପାଇଁ ବିଶ୍ୱାସଘାତକତାର ବହୁ ନଜିର ଥିଲେ ମଧ । ସମ୍ରାଟ ନରସିଂହ ଦେବ ପରମାର୍ଦ୍ଧି ଦେବଙ୍କୁ ଏତେ ବିଶ୍ୱାସ କରୁଥିଲେ କିପରି ? ବୀର ତାର ବିରତ୍ୱ ପାଇଁ ଅମର ହୋଇ ରହେ । କ୍ଷମତା ଭୋଗ ବିଳାସ ପାଇଁ ନୁହେଁ । ଏହା ଥିଲା ପରମବୀରଙ୍କ ଜୀବନ ଦର୍ଶନ । ଲଢ଼େ ସିପାହୀ – ଜିତେ ସର୍ଦ୍ଦାର – ନ୍ୟାୟରେ ନରସିଂହ ଦେବ ଇତିହାସରେ ବିଜୟୀବୀର ର ସମ୍ମାନ ପାଇଲେ, କିନ୍ତୁ ପରମାର୍ଦ୍ଧି ବେ ତାଙ୍କ ବୀରତ୍ୱ ସାମରିକ ପରିଚାଳନା, ଦକ୍ଷତା, ନିଷ୍ଠା, ତ୍ୟାଗ ପାଇଁ ଅମର ହୋଇ ରହିବେ । ଅନନ୍ତ ବାସୁଦେବ ମନ୍ଦିର ଥିବା ଯାଏଁ ଚନ୍ଦ୍ରିକା ଦେବୀ – ଓ ପରମାର୍ଦ୍ଧି ଦେବଙ୍କୁ ଏ ଜାତି ମନେରଖିବ । ଯାଜପୁର ର ପ୍ରଶାସନ ଭାବେ ସେ କଣ କରିଛନ୍ତି ତାହା ଏବେ ଗବେଷଣା ର ବିଷୟ । ଇତିହାସ ମାଟି ଯାଜପୁର ରେ ଐତିହାସିକ ବୀର ପରମାର୍ଦ୍ଧି ଦେବ ଯେଉଁ ଗୌରବ ଗାଥା ଲେଖିଛନ୍ତି ତାହା ଅଭିନନ୍ଦନୀୟ ।

ଯାଜପୁର ମାଟିର ପ୍ରଶାସକ ଉତ୍କଳ ବାହିନୀର ସର୍ବୋଚ୍ଚ ସେନାପତି ଯାଜପୁର

ପାଇଁ କଣ କରିଯାଇଛନ୍ତି ତାହା ଇତିହାସ ର ଅନ୍ଧାରୀ ଗର୍ଭରେ କିନ୍ତୁ ଓଡିଶାର ସ୍ୱାଭିମାନ ପାଇଁ ସେ ସବୁଦିନେ ଅମର ଯାଜପୁର ମାଟି ତାଙ୍କ ପରି ପ୍ରଶାସକ ପାଇ ମଧ ଧନ୍ୟ ହୋଇଛି । ଗଂଗବଂଶ ର ଶାସନ କାଳରେ ଯାଜପୁର ଅଂଚଳରେ ବହୁ ମନ୍ଦିର ମୂର୍ତ୍ତି ନିର୍ମିତ ହୋଇଛି । ସିଦ୍ଧେଶ୍ୱର ମନ୍ଦିର, ଗଙ୍ଗେଶ୍ୱର ମନ୍ଦିର ତେଲିଗଡ ଦୁର୍ଗ, ମହାବିନାୟକ ମନ୍ଦିର ଆଦି ବହୁବିଧ ନିର୍ମାଣ କାର୍ଯ୍ୟ କରାଯାଇଥିଲା । ବହୁ ଆଜି ବିସ୍ମୃତି ଗର୍ଭରେ ଲୀନ ହୋଇଛି । ସେହିପରି ପରମାର୍ଦ୍ଧି ଦେବଙ୍କ ଉଆସ ଓ ନିର୍ମାଣ କାର୍ଯ୍ୟ ଏବେ ମଧ ଇତିହାସ ର କରାଳଗର୍ଭରେ ବିଲୀନ ।


ସହାୟକ ଗ୍ରନ୍ଥ ଓ ପ୍ରବନ୍ଧ :

୧. ଓଡିଶାର ଇତିହାସ ( ୧ମ ଭାଗ ) ଡଃ ଯଜ୍ଞ କୁମାର ସାହୁ

୨. ଓଡିଶା ର ଇତିହାସ - ଡଃ ଅତୁଲ ଚନ୍ଦ୍ର ପ୍ରଧାନ

୩. ଓଡିଶା ର ଇତିହାସ - ପ୍ୟାରିମୋହନ ଆଚାର୍ଯ୍ୟ

୪. ଓଡିଶାର ସଂକ୍ଷିପ୍ତ ଇତିହାସ - ପଣ୍ଡିତ ବିନାୟକ ମିଶ୍ର

୫. ଉତ୍କଳ ପ୍ରତିଭା ୧୯୪୯ - ମହେନ୍ଦ୍ର ପଟ୍ଟନାୟକ

୬. ଭାରତୀ - ଭାରତ ଇତିହାସ - ରାଜେନ୍ଦ୍ର ପ୍ରସାଦ ଦାସ

୭. କୋଣାର୍କ ପତ୍ରିକା ଓଡିଶାର ସମର ସାହିତ୍ୟ - ଡଃ ଭଗବାନ ପଣ୍ଡା

୮. Orissa Review - 1981 - Military Glory of Gangas -Dr. S.N. Rajguru




# ବିରଜାନଗର ର ଭିଷକ୍ ପରିବାର

ଜୀବନ ଅନିତ୍ୟ । ମୃତ୍ୟୁ ଶାଶ୍ୱତ, ଏ ତଥ୍ୟ ମଣିଷ ଜାତିର ପ୍ରାଥମିକ ଦାର୍ଶନିକ ଅନୁଭବ । କିନ୍ତୁ ଯନ୍ତଣାରୁ ମୁକ୍ତି ପାଇଁ ଯେଉଁ ମାନସିକ କସରତ ଆବଶ୍ୟକ ତାହା ପ୍ରାକ୍ ଐତିହାସିକ ଯୁଗରୁ ମଣିଷ କରିଆସିଥିଲା । ତାର ଧାରା, ଉପଧାରା ସମ୍ବନ୍ଧରେ ଗବେଷକ ମାନେ କିଛି କିଛି ମତପ୍ରକାଶ କରିଛନ୍ତି । ହରିଣ ଆଦି ପଶୁ ମାନଙ୍କ ଚର୍ବୀ, ଶିଂଘ ରୁ କିଛି ଯନ୍ତଣା ନାଶକ ଔଷଧ ପ୍ରସ୍ତୁତି, ବିଶେଷ କରି ଶିଳାଜିତ୍ ରାସାୟନର ବ୍ୟବହାର, ନିମ୍ବ ଗଛର ବିବିଧ ଅଂଶର ଔଷଧୀୟ ଗୁଣର ଉତ୍ସ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ବୋଲି ମତ ପ୍ରକାଶିତ । ବୈଦିକ ଯୁଗରେ ଚେରମୂଳ ଔଷଧ, ମନ୍ତ୍ର, ଗୁଣୀଗାରେଡୀ, ପ୍ରାର୍ଥନା, ଉପବାସ ଆଦି ଆରୋଗ୍ୟ ଲାଭରେ ଅସଂଖ୍ୟ ଉପାୟମାନ ଆବିଷ୍କୃତ । ବୈଦିକ ଯୁଗର ଏକ କାହାଣୀ ରୁ ଏକ କଟାଗୋଡ ସ୍ଥାନରେ କୃତ୍ରିମ ଲୁହାଗୋଡ ଯୋଡି ଦେବାର ସୂଚନା ଆଧୁନିକ ସର୍ଜରୀ (ଶଲ୍ୟ ଚିକିତ୍ସା) ମୂଳ ବୋଲି ଧରାଯାଏ । ଅଥର୍ବବେଦ, ଅଗ୍ନିପୁରାଣ, ଆଦି ପ୍ରାଚୀନ ଗ୍ରନ୍ଥରେ ଚିକିତ୍ସା ସମ୍ବନ୍ଧୀୟ ବହୁ ବର୍ଣ୍ଣନା ମିଳେ ।  ଯଜ୍ଞରେ ପଶୁବଳୀ, ପଶୁର ବିଭିନ୍ନ ଅଂଶକୁ ଯଜ୍ଞାଗ୍ନିରେ ଅହୁତି ଦେବା କାର୍ଯ୍ୟରେ ଆଧୁନିକ ଅନାଟେମୀ (Anatomy) ର ମୂଳଭାବ ନିହିତାରୋଗ, ତାହାର କାରଣ, ନିରାକରଣ, ଔଷଧ ଆବିଷ୍କାର, ଶଲ୍ୟଚିକିତ୍ସା ଆଦିର କ୍ରମବିକାଶ ବହୁ ଦିନରୁ ଆମ ଦେଶରେ ଚାଲି ଆସିଛି । ଆମ ରାଜ୍ୟର ଚିକିତ୍ସା ବିଜ୍ଞାନରେ ଯେଉଁ ଅଗ୍ରଗତି ର ଇତିହାସ ପରିଲକ୍ଷିତ ହୁଏ ତାର ଯାଜପୁରରେ ଏକ ଭିଷକ୍ / ଭିଷକ ପରିବାରରୁ ପରଂପରାରୁ ଅନୁଭୂତ ହୁଏ । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ଏକ ଶିଳାଲେଖରୁ କଳିଙ୍ଗରେ କୃଷ୍ଣଦତ୍ତ ନାମକ ଏକ ରାଜବୈଦ୍ୟ, ସିଂହପୁର ର ମହାରାଜ ଶତ୍ରୁଦମନଙ୍କ ରାଜଦରବାରରେ କାର୍ଯ୍ୟରତ ଥିଲେ । ଏହା ଗଂଗ ମାନଙ୍କ ଦ୍ୱାରା ଶାସିତ ହେଉଥିଲା । ୭ମ, ଅଷ୍ଟମ ଶତାବ୍ଦୀ ବେଳକୁ ଦକ୍ଷିଣ ଓଡିଶାକୁ କଳିଙ୍ଗ, ଦକ୍ଷିଣ ପୂର୍ବ ଓଡିଶାକୁ ଶ୍ୱେତକ ମଣ୍ଡଳ ଓ କୋଙ୍ଗଦ ମଣ୍ଡଳ ନାମରେ ବିଭକ୍ତ ହୋଇ ଭୌମଙ୍କର ରାଜମାନଙ୍କର ଅଧୀନରେ ଥିଲା । ଖ୍ରୀ ୭୩୬ ରେ ଭୌମବଂଶର ପ୍ରତିଷ୍ଠାତା ରାଜା ଉନ୍ମତ୍ତ କେଶରୀ (ପ୍ରଥମ ଶିବଙ୍କର ଦେବ ) ଉତ୍ତର ତୋଷାଳୀ, ଦକ୍ଷିଣ ତୋଷାଳୀ, ପୂର୍ବ ଗଡଜାତ ଗୁଡିକ ମିଶାଇ ତୋଷାଳୀ ରାଜ୍ୟ ର ବିସ୍ତାର କଲେ । ଏହି ବିସ୍ତୃତ, ସମୃଦ୍ଧ ଓ ସୁଶାସିତ ରାଜ୍ୟର  ରାଜଧାନୀ ଯାଜପୁର ଥିଲା । କେତେକ ଐତିହାସିକ ଏହାର ନାମ ପ୍ରଥମ ରାଜା ଶିବଗୁହଙ୍କ ନାମାନୁସାରେ ଗୁହେଶ୍ୱର ପାଟକ ବୋଲି ଅବିହିତ

କଲାବେଳେ ଅନ୍ୟ କେତେକ ଏ ପୀଠରେ ଆରାଧଦେବୀ ମା ବିରଜାଙ୍କ ନାମାନୁସାରେ ବିରଜାନଗର ବୋଲି କହୁଛନ୍ତି  କାରଣ ସମସ୍ତଙ୍କ ବର୍ଣ୍ଣନାରେ ମା ବିରଜା, ବୈତରଣୀ, ନାଭିଗୟା ଇତ୍ୟାଦି କଥାର ସାମଞ୍ଜସ୍ୟ ରହିଛି । ତମ୍ବାପତ୍ର ଶାସନ ଗୁଡିକରେ ଗୁହେଶ୍ୱର - ପାଟକ ନାମଟି ବିର୍ଣ୍ଣତ ।

ସେତେବେଳେ ଭୌମଦରବାରରେ ରାଜବୈଦ୍ୟ ମାନଙ୍କୁ କବିରାଜ ଭିଷକ୍ ବୋଲି ଯଥେଷ୍ଟ ମାନ୍ୟତା ମିଳୁଥିଲା । ସେମାନେ ମଧ ରାଜାଙ୍କ ଦୂତକ (Private Secretary) ମନ୍ତ୍ରଣାଦାତା ଆଦି ଗୁରତ୍ୱ ପୂର୍ଣ୍ଣ କାର୍ଯ୍ୟ କରୁଥିଲେ । ସେମାନେ ସେମାନଙ୍କର ଅଧୟନ, ଗବେଷଣା ଓ ଚିକିତ୍ସା ପାଇଁ ରାଜାମାନଙ୍କ ଠାରୁ ପ୍ରଚୁର ପରିମାଣରେ  ନିଷ୍କର ଜମି ଗ୍ରାମ ଆଦି ପାଉଥିଲେ । ସମାଜର ସେମାନଙ୍କ ଗୁରତ୍ୱ ବହୁ ପରିମାଣରେ ଅନୁଭବ କରାଯାଇ, ସେମାନଙ୍କୁ ପାଇଁ ବହୁ ଧନସଂପଦ ଜମି ଖଞ୍ଜି ଦିଆଯାଉଥିଲା ।

ଉନ୍ନଟ କେଶରୀଙ୍କ ରାଜତ୍ୱକାଳରେ ବିରଜା ନଗର ବା ଗୁହେଶ୍ୱର ପାଟକର ମଞ୍ଜୁଳ ବର୍ଣ୍ଣନା ବିଭିନ୍ନ ତାମ୍ରଫଳକରୁ ମିଳେ । ଶାନ୍ତି ସମୃଦ୍ଧି ଓ ସାର୍ବଭୌମତ୍ୱ ସହ ଧାର୍ମୀକ ଉଦାରତା ପାଇଁ ଏ ଯାଜପୁର ମାଟି ଖୁବ୍ ପ୍ରସିଦ୍ଧ ଅର୍ଜନ କରିଥିଲା ଉତ୍ତର ଭାରତର ଆର୍ଯ୍ୟ ସାଂସ୍କୃତିକ ସ୍ରୋତ ଓ ଦକ୍ଷିଣ ଭାରତର ଦ୍ରାବିଡ ସଂସ୍କୃତିର ମହାସଂଗମ ସେଦିନ ଯାଜପୁର ଥିଲା । ଶରୀରତତ୍ତ୍ୱ, ଚିକିତ୍ସା ବିଜ୍ଞାନ, ଗୁଳ୍ମାଦି ଔଷଧ ସମ୍ବନ୍ଧୀୟ ଉଭୟ ସଂସ୍କୃତିର ଆଲୋଚନା ଏ ମାଟିରେ ହୋଇଥିଲା । ସେହି ସମୟରେ ଯାଜପୁର ବା ବିରଜାଠାରେ ଏକ ଭିଷକ୍ ପରିବାର ବାସ କରୁଥିଲେ । ବଂଶ ପଂରପରାକ୍ରମେ ସେମାନେ ବୈଦ୍ୟ ସଂଜ୍ଞା ବହନ କରୁଥିଲେ । ତାର ସୂଚନା ଜୟବର୍ମନ ଦେବଙ୍କ ଗଞ୍ଜାମତାମ୍ର ଶାସନରୁ ମିଳେ । ଶିବଙ୍କର ଦେବଙ୍କ ରାଜ୍ୟ ଓ ଯୁଦ୍ଧ ଜୟ ସହିତ ବ୍ରାହ୍ମଣ ନନ୍ନଟଙ୍କୁ କୋଙ୍ଗଦ ମଣ୍ଡଳର ଏକ ଗ୍ରାମ ଦାନ କରାଯାଇଥିଲା । ଶ୍ୱେତକ ରାଜା ଭୌମବଂଶ ଅଧିନରେ ଏକ ସାମନ୍ତ ଥିବାରୁ ସେ ଏ ଦାନ ଦେବାପାଇଁ କୋଙ୍ଗଦ ମଣ୍ଡଳର ପ୍ରଶାସକ ବିଷବାର୍ଣ୍ଣବ ଦେବଙ୍କ ମଧସ୍ଥତାରେ ଉନ୍ନଟ କେଶରୀଙ୍କ ଠାରୁ ଅନୁମୋଦନ ପ୍ରାପ୍ତ ହୋଇଥିଲେ । (EP 2nd Vol XXIV Page 129 - 2137 FF) ଲେଖାକୁ ଅନୁସରଣ କରି ଡଃ ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି ।

"ଗଞ୍ଜାମରୁ ବଡଖେମୁଣ୍ଡି ଅଂଚଳରୁ ପ୍ରାପ୍ତ ମହାରାଜ ଜୟବର୍ମନଦେବ ପ୍ରଦତ୍ତ ଗୋଟିଏ ତାମ୍ର ଶାସନର ଗ୍ରହୀତା ରୂପେ ନନ୍ନଟ ମହତ୍ତ୍ୱର ହୋଇଛନ୍ତି । ବିରଜାନଗରୀରେ ସେତେବେଳେ ମହାରାଜ ଉନ୍ନଟ କେଶରୀ ଅବସ୍ଥାନ କରୁଥିଲେ । ସେତେବେଳେ ତାଙ୍କ ଠାରୁ ଅନୁମତି ପାଇ ମହାରାଜ ଜୟବର୍ମନ ଦେବ କୋଙ୍ଗଦ ମଣ୍ଡଳରେ ଅବସ୍ଥିତ ବର୍ତ୍ତନୀ

ବିଷୟସ୍ଥ ବଲମଶୃଙ୍ଗ ନାମକ ଗୋଟିଏ ଗ୍ରାମ ନନ୍ନଟଙ୍କୁ ଦାନ କରିଥିଲେ । ଜୟବର୍ମନଙ୍କ ପରେ ସେହି ବଂଶର ଅନନ୍ତ ବର୍ମା ନାମକ ଶାସକ ଭୌମ ସଂବତ ୭୯ ଖ୍ରୀ ୮୧୫ ରେ ଶ୍ୱେତକ ରାଜ୍ୟରେ ଖଳଗୁଖଣ୍ଡ ବିଷୟରେ ଅବସ୍ଥିତ ସ୍ୱଳ୍ପ ବେଲୁର ନାମକ ଗୋଟିଏ ଗ୍ରାମ ଦାନ କରିଥିଲେ ।

ସେହିପରି ୨ଟି ଅଭିଲେଖରୁ ନନ୍ନଟବୈଦ୍ୟଙ୍କ ପରିବାରରେ କିଛି ପରିଚୟ ମିଳେ । ଭୌମସଂବତ ୯୧ ବା ୮୨୭ ଖ୍ରୀ ରେ ଉଦୟଗିରିରେ ଗଣେଶଗୁମ୍ଫା ଶିଳାଲେଖ ଓ ଭୌମସଂବତ ୯୩ ବା ୮୨୯ ରେ ଧଉଳିଗୁମ୍ଫା ଅଭିଲେଖରୁ ବୈଦ୍ୟ ସଂଜ୍ଞାଧାରୀ ନନ୍ନଟଙ୍କ ପୁତ୍ର ଭୀମଟ ଓ ପୌତ୍ର ଭଟ୍ଟ ଲୋୟମର୍କ ସେଠାରେ ଗୋଟିଏ ମଠ ସ୍ଥାପନ କରି ଆର୍ଯବଟାଟିକା ଦେବୀଙ୍କୁ ପୂଜା କରୁଥିଲେ । ଗଣେଶ ଗୁମ୍ଫା ଲେଖାରୁ ମଧ୍ୟ ସୂଚିତ ହୁଏ ଯେ ସେଠାରେ ଶାନ୍ତିକର ଦେବଙ୍କ ଶାସନ କାଳରେ ଭିଷକ ନନଟଙ୍କ ପୁତ୍ର ଭୀମଟ ଅବସ୍ଥାନ କରୁଥିଲେ । ତାଙ୍କ ମାତାଙ୍କର ନାମ ଥିଲା ଇଜ୍ୟା ।

ସେମାନେ ବସ୍ତଗୋତ୍ରୀୟ ବ୍ରାହ୍ମଣ ରୂପେ ପରିଚିତ । ସେମାନେ ଦାନ ଗ୍ରହୀତା ଥିଲେ । ସଂସ୍କୃତ ଓ ଓଡିଆଭାଷାରେ କିଛି ବୈଦ୍ୟଶାସ୍ତ୍ର ଲେଖିଥିଲେ ସେମାନଙ୍କ ବଂଶ ପରିଚୟ ଏହିପରି ହେବ ।

ନନ୍ନଟ + ଇଜ୍ୟା

ଭୀମଟଭଟ୍ଟ-ଲୋୟୋମକ

ଡଃ ଯଜ୍ଞକୁମାର ସାହୁ ଓଡିଶାର ଇତିହାସ ରେ ଲେଖିଛନ୍ତି "ଅନନ୍ତବର୍ମାଙ୍କ ସ୍ୱଳ୍ପବେଲୁର ତାମ୍ରଶାସନ ବସ୍ତଗୋତ୍ରିୟ ଭଟ୍ଟ ନନ୍ନଟ ଶର୍ମାଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ହୋଇଛି । ଏହି ନନ୍ନଟ ଶର୍ମା ଜୟବର୍ମନଙ୍କ ଗଞ୍ଜାମ ତାମ୍ରଶାସନରେ ଦାନଗ୍ରହୀତା ଥିଲେ ।" ଏହି ପ୍ରସିଦ୍ଧ ଭିଷକ ପରିବାର ଓ ତତ୍କାଳୀନ ସାମାଜିକ ଅବସ୍ଥାରୁ ଏହା ଅନୁମିତ ହୁଏ ଯେ ରାଜପୃଷ୍ଠକତା ଲାଭ କରିଥିବା ଏହି ବୈଦ୍ୟ ପରିବାର ସଂଜ୍ଞା ଭଟ୍ଟ ବା ଶର୍ମା ହୋଇପାରେ । "ସେମାନେ କେବଳ ବିରଜାମଣ୍ଡଳର ମହାରାଜଙ୍କ ରାଜବୈଦ୍ୟ ନଥିଲେ ବରଂ ସେମାନଙ୍କ ସେବାକାର୍ଯ୍ୟ ରାଜପରିବାର ସମେତ, ସାମନ୍ତ, ସେନା, ଜନତାଙ୍କ ଲାଗି ଉଦ୍ଦିଷ୍ଟ ଥିଲା ନହେଲେ ସେମାନେ ଜୟବର୍ମନ ଓ ଅନନ୍ତବର୍ମାଙ୍କ ଠାରୁ ଗ୍ରାମ ଦାନ ପାଇଥାନ୍ତେ କିପରି ? ଦ୍ୱିତୀୟତଃ ଭିଷଜ ଗବେଷଣା ଶିକ୍ଷାଦାନ ଆଦି କ୍ଷେତ୍ରରେ ସେମାନଙ୍କର ଭୂମିକା ଥିଲା । ସେମାନଙ୍କ ନାମରୁ ସେମାନେ ଦ୍ରାବିଡ ପରି ଜଣାଗଲେ ମଧ୍ୟ ଆର୍ଯ୍ୟ ସଂଜ୍ଞାଧାରଣ କରିଥିଲେ । ସେମାନେ ଧଉଳି ଓ ଖଣ୍ଡଗିରି ଆଦି ପ୍ରାଚୀନ ଜୈନ ଓ ବୌଦ୍ଧପୀଠରେ ଓ ଔଷଧାଦି ବୃକ୍ଷ ପରିବେଶରେ ଅଧ୍ୟୟନ ଓ ଅଧ୍ୟାପନ କାର୍ଯ୍ୟରେ ଲିପ୍ତଥିଲେ । ଧଉଳି

ପାହଡରୁ ଗୁମ୍ଫାମାନଙ୍କୁ ଅଧ୍ୟୟନ କରି ବୌଦ୍ଧ ଯୋଗ ସାଧକ ମାନଙ୍କର ଏହା ସାଧନା ଭୂମିଥିଲା ବୋଲି ଅନେକ ପଣ୍ଡିତ ମତବ୍ୟକ୍ତ କରନ୍ତି । ପ୍ୟାରିମୋହନ ଆଚାର୍ଯ୍ୟଙ୍କ ମତରେ ସେ ସବୁରେ ବୈଦ୍ୟଙ୍କ କୁଣ୍ଡି ପ୍ରାୟ କୁଣ୍ଡିମାନ କଟା - ହୋଇ ରହିଅଛି । ଏଥିରୁ ସେ ସବୁସ୍ଥାନ ଔଷଧାଳୟ ଥିବାର ଅନୁମିତ ହେଇଛି । କେହିକେହି ଆଲୋଚକ ଏହି ଭଟ୍ଟ ପରିବାରର ଚିକିତ୍ସାଳୟର ନାମ ଆରୋଗ୍ୟଭାରତୀ ଥିଲା ବୋଲି ମତ ପ୍ରକାଶ କରନ୍ତି ଓ ଏ ଗୁମ୍ଫାମାନଙ୍କରେ ଭଟ୍ଟ ପରିବାରଙ୍କ ଦ୍ୱାରା ପରିଚାଳିତ ଆୟୁବିଜ୍ଞାନ ଅନୁଷ୍ଠାନ ମଧ ପ୍ରଚଳିତ ଥିଲା ଓ ସେଠାରେ ଯେଉଁ ମୂର୍ତ୍ତୀମାନ ରହିଛି ସେଗୁଡିକ anatomy map ବୋଲି କେତେକ ମତପ୍ରକାଶ କରନ୍ତି । ଯାଜପୁରର ଏହି ଭିଷକ୍ ପରିବାର ସମ୍ବନ୍ଧରେ ଅଧିକ ଗବେଷଣା ଆବଶ୍ୟକ । ସେତେବେଳେ ଯାଜପୁର ସଂସ୍କୃତି ଏକ ଭବ୍ୟ ରୂପ ଗ୍ରହଣ କରୁଥାଏ । ଯାଜପୁରରେ ତାନ୍ତ୍ରୀକ ମହାଜାନ ଧର୍ମ, ପ୍ରଜ୍ଞାପାରମିତା ସୂତ୍ର, ବୌଦ୍ଧ ବିଶ୍ୱବିଦ୍ୟାଳୟରେ ଯୋଗ, ତନ୍ତ୍ର ସହଜଯାନ ବିଶେଷ କରି ତାନ୍ତ୍ରିକ ମହାଯାନର ତାରାଦେବୀଙ୍କ ଆରାଧନା କ୍ରମଶଃ ଅପସରି ଆସୁଥାଏ । ଉତ୍ତରଭାରତ ର ଆର୍ଯ୍ୟମାନଙ୍କ ଶୈବ, ଶାକ୍ତ, ବୈଷ୍ଣବ ବିଶେଷକରି ବ୍ରାହ୍ମଣଧର୍ମ କ୍ରମଶଃ ଏ ମାଟିର ଦାନା ବାନ୍ଧୁଥାଏ । ଆମ ପୁରାଣ ବର୍ଣ୍ଣିତ ହରିହର ମିଳନ ପରି ଦୁଇ ସଂସ୍କୃତିର ମିଳନ ଯାଜପୁର ସାସ୍କୃତିରେ ଅଷ୍ଟମରୁ ଦଶମ ଶତାବ୍ଦୀ ଇତିହାସରେ ପରିଲକ୍ଷିତ ହୁଏ । ଏହି ସମୟରେ ସର୍ବଭାରତୀୟ ସଂସ୍କୃତିର ନବ୍ୟ ଦ୍ରାବିଡ ଜାତି ବା ଆର୍ଯ୍ୟଦ୍ରାବିଡ ସମ୍ମିଶ୍ରମରେ ଉଦଭବ ଏକ ଅଧିକ ସଂସ୍କୃତି ସଂମ୍ପନ୍ନ ଜାତିକୁ ବ୍ରାତ୍ୟ କୁହାଯାଉଥିଲା । ସେହି ବ୍ରାତ୍ୟମାନଙ୍କ ପ୍ରାଥମିକ ବାସଭୂମି ହେଲା ଉତ୍ତର କଳିଙ୍ଗ ବା ଯାଜପୁର ଅଂଚଳ । ଏହି ଭିଷକ୍ ପରିବାର ନାମ ଓ ସଂଜ୍ଞାରୁ ସେହି ସଂସ୍କୃତି ବ୍ରାତ୍ୟ ବୋଲି ଅନୁମିତ ହୁଏ । ଭୀମଟ୍ଟ, ନନ୍ନଟ୍ଟ ଲୋୟୋମୋକ ନାମ ସହିତ ଭଟ୍ଟ ଓ ଶର୍ମା ପଦବୀର ସଂଯୋଗ ରୁ ଏହି ପରିବାର ଏକ ବ୍ରାତ୍ୟବ୍ରାହ୍ମଣ ପରିବାରର ଲୋକଭାବେ ଅନୁମିତ ହୁଅନ୍ତି ।

ଶେଷରେ ଏତିକିମାତ୍ର କୁହାଯାଇପାରେ ଯେ, ବିରଜା ନଗରୀ ଅଷ୍ଟମ ଶତାବ୍ଦୀ ଏକ ସମୃଦ୍ଧ ନଗର ଥିଲା ଚିକିତ୍ସା କ୍ଷେତ୍ରରେ ଯଥେଷ୍ଟ ପ୍ରଗତି ହାସଲ କରିଥିଲା ଓ ଆମ ଦେଶର ବିଭିନ୍ନ ଅଂଚଳକୁ ଏହି ଭିଷକ୍ ପରିବାର ନିକଟକୁ ବା ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଆରୋଗ୍ୟ ଭାରତୀ ଚିକିତ୍ସା କେନ୍ଦ୍ରକୁ ବହୁ ରୋଗୀ ଆସୁଥିଲେ । ସେମାନେ ଉଚ୍ଚତର ଗବେଷଣା ଅଧ୍ୟୟନ ଓ ଅଧ୍ୟାପନା ପାଇଁ ଖଣ୍ଡଗିରି, ଉଦୟଗିରି ଆଦି ଐତିହାସିକ ପାହାଡରେ ଅବସ୍ଥାନ କରୁଥିଲେ । ସେମାନଙ୍କ ଲେଖା ଯଦି ଓ ଏଯାଏଁ ଆବିଷ୍କୃତ ହୋଇନି, ହେଲେ ସେମାନଙ୍କର ଶିଷ୍ୟ ପ୍ରଶିଷ୍ୟଙ୍କ ଦ୍ୱାରା ବହୁ ଆୟୁର୍ବେଦ ପୁସ୍ତକ / ପୋଥି ଲିଖିତ ହୋଇଛି ।

ଓଡିଶା ବୈଦ୍ୟମାନଙ୍କ ଇତିହାସରେ ଯେଉଁ ଅମର ପୁରୁଷମାନଙ୍କ ନାମ ଶୁଣାଯାଏ , ଯଥା - ବିଶ୍ୱନାଥ କବିରାଜ ତାଙ୍କ ପ୍ରପିତାମହ ନାରାୟଣ ଦାସ, ମାଧବ କର, ବିଶ୍ୱନାଥ ମହାପାତ୍ର, ଭଗିରଥି ମହାପାତ୍ର, ଗୋବିନ୍ଦ ଦାସ, ଚକ୍ରପାଣି ଦାସ ସେମାନେ ଏ ଯାଜପୁର ବୈଦ୍ୟ ପରଂପରା ଜଣେ ଜଣେ ସୁଦକ୍ଷ କବିରାଜ ବୋଲି କହନା କରିବା ଆଦୌ ଅଯଥାର୍ଥ ନୁହେଁ

ସହାୟକ ପୁସ୍ତକ : ଓଡିଶାର ଇତିହାସ - ଡଃ ଯଜ୍ଞକୁମାର ସାହୁ  ଆସନ୍ତା କାଲି ୧୯୭୮ ଜୁନ୍ - ପ୍ରବନ୍ଧ - ଓଡିଶାର ପ୍ରାଚୀନ ବୈଦ୍ୟ ଓ ଚିକିତ୍ସା ଗ୍ରନ୍ଥରେ ପ୍ରସାର - ପ୍ରାଦନ୍ତିକ - ଡଃ ସତ୍ୟନାରାୟଣ ରାଜଗୁରୁ

ଓଡିଶା ଇତିହାସ - ପ୍ୟାରି ମୋହନ ଆଚାର୍ଯ୍ୟ

ଯୁଗେଯୁଗେ ଯାଜପୁର - ଡଃ ଏକଦଶୀ ପାତ୍ରୀ

Evolution of Indian Culture - L.N. Luniya



# ପ୍ରାଚ୍ୟବିଦ୍ୟା ଅଧ୍ୟାପକ - ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର

ଅଷ୍ଟାଦଶ ଶତାବ୍ଦୀ ର ଶେଷଭାଗ ବେଳକୁ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତର ଶାସନ ବ୍ୟବସ୍ଥାକୁ ସଂପୂର୍ଣ୍ଣ ରୂପେ କରାୟତ୍ତ କରିସାରିଥାଏ । ଭାରତ ର ପ୍ରଥମ ଗଭର୍ଣ୍ଣର ଜେନେରାଲ ଭାବେ ୱାରେନ୍ ହେଷ୍ଟିଂସ୍ ୧୭୭୨ ଖ୍ରୀ ରେ ଦାୟୀତ୍ୱ ଗ୍ରହଣ କରିଥିଲେ । ସେ ମାତ୍ର ଅଠର ବର୍ଷ ବୟସରୁ ଭାରତକୁ ଆସି ଇଷଟ ଇଣ୍ଡିଆ କମ୍ପାନୀର କିରାଣୀ ଭାବେ କାର୍ଯ୍ୟ ଆରମ୍ଭ କରିଥିଲେ । ନିଜର ଦକ୍ଷତା ବଳରେ ସେ କିରାଣୀ ପଦବୀରୁ ଗଭର୍ଣ୍ଣର ଜେନେରାଲ ହୋଇପାରିଥିଲେ । ପ୍ରଶାସନିକ କ୍ଷେତ୍ରର ସବୁ ଛୋଟ ବଡ ସମସ୍ୟା ସମ୍ବନ୍ଧରେ ତାଙ୍କର ଗଭୀର ଅଭିଜ୍ଞତା ଥିଲା । ସେ ନିଜ ଅଭିଜ୍ଞତା ରୁ ଅନୁଭବ କରିଥିଲେ ଯେ, ଇଂରେଜ ମାନଙ୍କୁ ଭାରତୀୟ ମାନଙ୍କୁ ଶାସନ କରିବା ପାଇଁ ମୁଖ୍ୟ ପ୍ରତିବନ୍ଧକ ହେଉଛି ଭାଷା । ଇଂରେଜ ମାନେ ଉଚ୍ଚ ପଦବୀରେ ରହି ଶାସନ କରିବେ ଅଥଚ ଆମ ଭାଷା ତାଙ୍କୁ ଜଣା ନାହିଁ, ଏ ମାଟିର ସଂସ୍କୃତି, ଚଳଣୀ, ଧର୍ମ ସମ୍ବନ୍ଧରେ ପ୍ରାୟ ଅଜଣା ହୋଇ ରହିଥାନ୍ତି ସେମାନେ ଅନୁବାଦକ ମାନଙ୍କ ଦ୍ୱାରା ପରିଚାଳିତ ହୋଇ ଅନ୍ଧାରରେ ବାଡି ବୁଲାଇବା ପରି ଶାସନ ଚଳାଉଥିଲେ । ବିଶେଷ କରି କୋର୍ଟ କଚେରୀର ବିଚାର ପତି ମାନଙ୍କୁ ନ୍ୟାୟଦାନ କ୍ଷେତ୍ରରେ ବହୁ ଅସୁବିଧା ଦେଖାଦିଏ । ୱାରେନ୍ ହେଷ୍ଟିଂସ ପ୍ରଥମେ ଏ ସମସ୍ୟା ଚିନ୍ତାକରି କିଛି ପଦକ୍ଷେପ ନେଇଥିଲେ ।

In 1781 Warren Hastings the first Governor General of India founded the calcutta Madrasha to qualify the sons of Muslim through the arabic medium for responsible and lucrative officers. In 1791 Jonathan Duncan the British residenent at banarash established a college for teachings qualified Hindus and specially to supply qualified hindu Asst. For European Judges. In 1784 Sir wilium Jones a Judge of supreme court calcutta founded with the help warrent Has hing The royal Asiatic Society of Bengal in Calcutta. It had done monumental work in the modern age to explain to the world anlient Indian Culture.

-L. N. Lunia

ସାର ଉଇଲିୟମ ଜୋନସ କଲିକତା ସୁପ୍ରିମକୋର୍ଟର ମୁଖ୍ୟ ବିଚାରପତି ଥିଲାବେଳେ

ଇଂରେଜ ଓ ଭାରତୀୟ ଭାଷା ସଂସ୍କୃତି ର ଆଦାନ ପ୍ରଦାନ ସମସ୍ୟା ଟିକୁ ଗୁରୁତ୍ୱ ଦେଇ ୧୭୮୪ ଖ୍ରୀ ରେ ରୟାଲ ଏସିଆଟିକ ସୋସାଇଟି ଅଫ ବେଙ୍ଗଲ ନାମ ଅନୁଷ୍ଠାନ ଟିଏ ଗଢିଲେ । ଏହାର ସୁଫଳ ପରବର୍ତ୍ତୀ କାଳରେ ଉପଲବ୍ଧ । ଭାରତୀୟ ସଂସ୍କୃତିର ପ୍ରଚାର ପ୍ରସାର ପାଇଁ ଏ ଅନୁଷ୍ଠାନ ଟି ମହାନ କାର୍ଯ୍ୟ କରିଥିଲା । ଅତୀତରେ କଲିକତା ମାଡ୍ରାସା ଓ ବନାରସ ହିନ୍ଦୁ କଲେଜର ବିଦ୍ୱାନ ମାନେ ବିଚାର ବିଭାଗ ଓ ପ୍ରଶାସନ ବିଭାଗର ଅନୁବାଦକ ଭାବେ କାର୍ଯ୍ୟ କରୁଥିଲେ । ମୁଖ୍ୟ ବିଚାର ପତି ଜୋନସ ସାହେବ ଙ୍କ ପ୍ରଯତ୍ନରେ ଇଂରେଜ ପଦସ୍ଥ ଅଫିସର ଓ ବିଦ୍ୱାନ ମାନେ ଭାରତୀୟ ଭାଷା, ସଂସ୍କୃତି ଓ ରୀତିନୀତିକୁ ନିଜେ ଜାଣିବା ପାଇଁ ପ୍ରବଳ ଉତ୍ସାହ ପ୍ରଦର୍ଶନ କଲେ । ସେମାନେ ସେହି Royal Society of Bengal ଅନୁକୂଲ୍ୟ ରେ ୧୮୦୧ ମସିହାରେ କଲିକତା ରେ ଗୋଟିଏ କଲେଜ ପ୍ରତିଷ୍ଠା କଲେ ତା ନାମ ଥିଲା Forte Wilium College.

ଏହି କଲେଜ ରେ ସାଧାରଣ ଛାତ୍ରଛାତ୍ରୀ ପଢୁନଥିଲେ । ଏଠାରେ କେବଳ ୟୁରୋପୀୟ ଅଫିସର, ବିଚାରପତି, ପଦସ୍ଥ ବ୍ୟକ୍ତି, ପାଶ୍ଚାତ୍ୟ ବିଦ୍ୱାନ ମାନେ ପ୍ରାଚ୍ୟଭାଷା ଶିକ୍ଷା କରୁଥିଲେ ଓ ଭାରତୀୟ ଜନଜୀବନ ଓ ସଂସ୍କୃତି ସମ୍ବନ୍ଧରେ ଅଧ୍ୟୟନ କରୁଥିଲେ । ମୁଖ୍ୟଭାଷା ସଂସ୍କୃତ ଅଧ୍ୟୟନ ସହିତ ଆରବୀ, ଫାର୍ସି, ବଂଗଳା ପ୍ରଭୃତି ଭାଷା ଶିକ୍ଷା କରୁଥିଲେ । କିନ୍ତୁ ଦୁଃଖର କଥା ଓଡିଆ ସେଠାରେ ପଢା ହେଉନଥିଲା । Our ancient Language Sanskrit was restored to us. through English. The first English man to learn sanskrit was charles wilkims and the person who clearly ralised the significant of sanskrit was willium Jones.

-Evalution of Indian Culture , L.N. Lunia.

ଏହି ଫୋର୍ଟ ଉଇଲିୟମ କଲେଜ ଆମ ପ୍ରାଚୀନ ଭାଷା, ସଂସ୍କୃତି ସମେତ ଅନେକ ପ୍ରାଦେଶିକ ଭାଷା ର ଅଧ୍ୟୟନ, ଅନୁଶୀଳନ, ଅନୁବାଦ, ଗବେଷଣା, ବ୍ୟାକରଣ ପ୍ରସ୍ତୁତି, ଅଭିଧାନ ପ୍ରସ୍ତୁତି ଆଦି କ୍ଷେତ୍ରରେ ବହୁ ଆଦର୍ଶ କାର୍ଯ୍ୟ କରିଯାଇଛି । ୟୁରୋପୀୟ ବିଦ୍ୱାନ ଯଥା Willium Jones, Charls ଆଦି ବିଶ୍ୱ ବରେଣ୍ୟ ବିଦ୍ୱାନ ଏହି Asiatic Society of Bengal ର ସଭ୍ୟ ଓ Forte Willium College. କଲେଜ ଛାତ୍ର

ଏହି ଐତିହାସିକ କଲେଜ ରେ ପ୍ରାଚ୍ୟବିଦ୍ୟା ବିଭାଗ ରେ ଅଧ୍ୟାପକ ଭାବେ ୧୮୦୧ ଖ୍ରୀଷ୍ଟାବ୍ଦର ଯୋଗ ଦେଇଥିଲେ , ଯାଜପୁର ମାଟିର ଅମର ବିଦ୍ୱାନ ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର । ସେ ଗୋଟିଏ କୁଳୀନ ବ୍ରାହ୍ମଣ ପରିବାର ରେ ଯାଜପୁର ରେ

ଜନ୍ମ ହୋଇଥିଲେ । ତାଙ୍କର ଜନ୍ମ ସମୟ ୧୭୬୨ ମସିହା କିମ୍ବା ୧୭୬୩ ମସିହାରେ ହୋଇଥାଇପାରେ ବୋଲି ପଣ୍ଡିତ ବାଙ୍କେବିହାରୀ ମହାପାତ୍ର ସୂଚନା ଦେଇଛନ୍ତି ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ । "ଓଡିଆ ଆନ୍ଦୋଳନର ଇତିହାସ" ପୁସ୍ତକ ରେ "ଯାଜପୁର ନିବାସୀ ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ଓଡିଆ ରେ ବତ୍ରିସ ସିଂହାସନ, ହିତୋପଦେଶ ଆଦି ଲେଖିଥିଲେ । ତାଙ୍କ ଶ୍ରେଷ୍ଠ ରଚନା ପ୍ରବୋଧ ଚନ୍ଦ୍ରିକା (ଓଡିଆ) ତାଙ୍କ ମୃତ୍ୟୁର ବହୁକାଳ ପରେ ପ୍ରକାଶ ପାଇଲା । ମୃତ୍ୟୁଞ୍ଜୟ ସଂସ୍କୃତ, ଓଡିଆ ଓ ବଂଗଳା ଭାଷାର ପଣ୍ଡିତ ଥିଲେ । ସେ ୧୮୦୦ ଖ୍ରୀଷ୍ଟାବ୍ଦରେ ଫୋର୍ଟ ଉଇଲିୟମ କଲେଜର ପ୍ରାଚ୍ୟ ବିଦ୍ୟା ବିଭାଗର ଅଧ୍ୟାପକ ଥିଲେ । ବଂଗାଳୀ ମାନେ ଓଡିଆ ବହିକୁ ଛାପାଇବା ପାଇଁ ପକ୍ଷପାତ ଥିଲେ ଓ ଓଡିଆ ବୋଲି ତାଙ୍କ ପ୍ରତି ସୁନଜର ଦେଉ ନଥିଲେ । ତାଙ୍କର ଜନ୍ମ ୧୭୬୨ ବା ୧୭୬୩ ଖ୍ରୀଷ୍ଟାବ୍ଦ ରେ ହେବା ସମ୍ଭବ–ପୃଷ୍ଠା-୨୫ ଯାଜପୁର ମାଟିର ଏ ଅମର ବିଦ୍ୱାନ ତାଙ୍କର ଅତୁଳନୀୟ ପାଣ୍ଡିତ୍ୟ ଓ ଭାଷାଜ୍ଞାନ ପାଇଁ ଫୋର୍ଟ ଉଇଲିୟମ କଲେଜରେ ଏକ ମର୍ଯ୍ୟାଦାପୂର୍ଣ୍ଣ ଆସନ ଲାଭ କରିଥିଲେ । ମାତ୍ର ଦୁଃଖର ବିଷୟ ୟୁରୋପୀୟ ପଣ୍ଡିତମାନେ ତାଙ୍କ ଠାରୁ ସଂସ୍କୃତ ଓ ବଂଗଳା ଭାଷା ପଢୁଥିଲେ । ସେ କଲେଜ ରେ ଓଡିଆ ଭାଷା ଓ ସାହିତ୍ୟ ବିଷୟ ଆଦୌ ପଢାଯାଇନଥିଲା । ବହୁ ଅଣଓଡିଆ ଅଧ୍ୟାପକ, ଉଚ୍ଚ ଶିକ୍ଷିତ ୟୁରୋପୀୟ ଛାତ୍ରଙ୍କ ଗହଣ ରେ ନିଷ୍ଠାର ସହିତ କାର୍ଯ୍ୟ କରି, ଅବହେଳିତ ଓଡିଶା ଡିଭିଜନ ର ଏ ବିଦ୍ୱାନ ଓଡିଆ ଭାଷା ପାଇଁ ଯଦିଓ ବେଶୀ କିଛି କରିପାରିନାହାନ୍ତି, ତଥାପି ୟୁରୋପୀୟ ପଣ୍ଡିତ ମାନଙ୍କ ମନରେ ଓଡିଆ ଭାଷା ସାହିତ୍ୟର ଏକ ଦୃଢ ମୂଳଦୂଆ ନିର୍ମାଣ ରେ ସଫଳ ହୋଇପାରିଛନ୍ତି । ତାହା ତାଙ୍କୁ ଚିର ସ୍ମରଣୀୟ କରି ରଖିବ । ସେତେବେଳେ ଓଡିଆ ଭାଷାରେ ଛାପା ପୁସ୍ତକ ନାହିଁ , ବ୍ୟାକରଣ ନାହିଁ, ଅଭିଧାନ ନାହିଁ । ବଂଗ ବାସୀଙ୍କ ନାକଟେକା ଫେସନ ମଧ୍ୟରେ ଓଡିଆ ଭାଷା ବଂଚିଛି । ଏହା  ବଂଗଳା ର ଏକ ଉପଭାଷା ବୋଲି କଲିକତା ଦରବାର ରେ ଜନରବ । ଓଡିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ବଂଗରେ ହୁରିପଡିଛି । ପାଶ୍ଚାତ୍ୟ ପଣ୍ଡିତ ମାନେ ଓଡିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ ଓ ଏହା ବଂଗଳାର ଏକ ଉପଭାଷା ବୋଲି ସେତେବେଳେ ପ୍ରାୟ ଧରିନେଇଥାନ୍ତି । ଭାରତର ରାଜଧାନୀ କଲିକତା । ତାଳପତ୍ର ପୋଥି ମଧ୍ୟରେ ସାରଳାଦାସ, ଉପେନ୍ଦ୍ରଭଞ୍ଜଙ୍କ ପରି ଦିଗଗଜ କବି ମାନେ ବନ୍ଧା ହୋଇ ପଡିଛନ୍ତି । ଏହି ପରି ଏକ ଆଶ୍ଚର୍ଯ୍ୟମୟ ପରିବେଶରେ ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ନିଜର ବିଦ୍ୱତ୍ତା, ଅସୀମ ଧୈର୍ଯ୍ୟ, ପାଣ୍ଡିତ୍ୟ, ସାହସ କୁ ପାଥେୟ କରି ପାଶ୍ଚାତ୍ୟ ପଣ୍ଡିତ ମାନଙ୍କୁ ଓଡିଆ ଭାଷା ଆଡକୁ ଆକର୍ଷଣ କରିବା କାମ କମ୍ ଗୌରବର ବିଷୟ ନୁହେଁ ।

ଫୋର୍ଟ ଉଇଲିୟମ କଲେଜ ରେ ଅଧ୍ୟୟନ ରତ, ଗବେଷଣା ରତ ପାଶ୍ଚାତ୍ୟ ପଣ୍ଡିତ ମାନଙ୍କୁ ଓଡ଼ିଆ ଭାଷା, କଳା ସଂସ୍କୃତି ସମ୍ବନ୍ଧ ରେ ପ୍ରାଥମିକ ଉଚ୍ଚ ଧାରଣା ଦେଇ, ଯେଉଁ କଷ୍ଟସାଧ୍ୟ କାର୍ଯ୍ୟ ସେ କରିଯାଇଛନ୍ତି, ବାସ୍ତବିକ ତାହା ଅଭିନନ୍ଦନୀୟ । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ରେ ଗୋପାଳ ଚନ୍ଦ୍ର ପ୍ରହରାଜ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ଉପରେ ଅଭିମତ ଦେଇ ଲେଖିଛନ୍ତି : ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର A Late Oriya Bramhim Pondit of Jajpur author of an oriya dictionary and grammar when Forte willium College was first established in 1801 A.D.

ଏ ଯାଜପୁର ବାସୀ ଓଡ଼ିଆ ବ୍ରାହ୍ମଣ । ରାଜାବଳୀ ଓ ପ୍ରବୋଧ ଚନ୍ଦ୍ରିକା ନାମରେ ୨ ଖଣ୍ଡ ବଂଗଳା ପୁସ୍ତକ ରଚନା କରି ଯଥାକ୍ରମେ ୧୮୦୮ ଓ ୧୮୧୩ ଖ୍ରୀଷ୍ଟାବ୍ଦ ରେ ପ୍ରକାଶ କରିଥିଲେ । ସେ କଲିକତା ର ଫୋର୍ଟ ଉଇଲିୟମ କଲେଜ ରେ ନବାଗତ ଇଂରେଜ କର୍ମଚାରୀମାନଙ୍କୁ ବଂଗଳା ଭାଷା ଶିକ୍ଷା ଦେଉଥିଲେ । ବିଦ୍ୟାପତି ରଚିତ "ପୁରୁଷ ପରୀକ୍ଷା" ଓ "ବତ୍ରିସ ସିଂହାସନ ର ଅନୁବାଦ ମଧ୍ୟ ତାଙ୍କରି ଦ୍ୱାରା ପ୍ରକାଶିତ ହୋଇଥିଲା । ଏ ସକଳ ଗ୍ରନ୍ଥ ଉକ୍ତ କଲେଜର ପାଠ୍ୟ ପୁସ୍ତକ ସ୍ୱରୂପ ନିର୍ବାଚିତ ହୋଇଥିଲା । ଏତଦ୍‌ବ୍ୟତୀତ ସେ ଓ ଅଉଢଣେ ସାହେବ ମିଶି ଓଡ଼ିଆ ଅଭିଧାନ ସଂକଳନ କରିଥିଲେ । ତାହାହିଁ ଓଡ଼ିଆ ଭାଷାର ପ୍ରଥମ ଅଭିଧାନ । ୧୮୦୧ ଖ୍ରୀ ରେ ଫୋର୍ଟ ଉଇଲିୟମ କଲେଜ ସ୍ଥାପିତ ହେବା ସମୟରେ ତହିଁ ରେ ପଢା ହେବାପାଇଁ ବ୍ୟାକରଣ ଓ ଅଭିଧାନ ଆଦି କେତେକ ବଂଗଳା ଭାଷାରେ ଲେଖିଥିଲେ" ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସଂକଳନ ୰ ଗୋପାଳଚନ୍ଦ୍ର ପ୍ରହରାଜ ।

ସେତେବେଳେ ଓଡ଼ିଆ ଭାଷାର ଅବସ୍ଥା କହିଲେ ନସରେ । ଓଡ଼ିଶାର ପଣ୍ଡିତମାନେ ମଧ୍ୟ ଓଡ଼ିଆ ବଦଳରେ ସଂସ୍କୃତକୁ ଏ ପରି ଆଦର କରିନେଇଥିଲେ ଯେ ସେମାନେ ଓଡ଼ିଆ ପୋଥିଟିଏ ମଧ୍ୟ ଇଂରେଜ ବିଦ୍ୱାନ ମାନଙ୍କୁ ଦେଖାଉନଥିଲେ । ମିଷ୍ଟର ଷ୍ଟର୍ଲିଂ ପରି ଗବେଷକ ଓ ବିଦ୍ୱାନ ଓଡ଼ିଶାକୁ ଆସି ଓଡ଼ିଆ ପୋଥି ଦେଖିବାକୁ ଇଚ୍ଛା କରିଥିଲେ । ଓଡ଼ିଶାରେ ସେ ଓଡ଼ିଆ କାଞ୍ଚିକାବେରୀ ପୋଥି ବ୍ୟତୀତ ଅନ୍ୟ କୌଣସି ଲକ୍ଷଣୀୟ ପୋଥି ଦେଖିବାର ସୁଯୋଗ ପାଇ ନଥିଲେ ବୋଲି ସ୍ୱୀକାର କରିଛନ୍ତି । ଏ ଅବସ୍ଥା, ଏ ରକ୍ଷଣଶୀଳ ଚିନ୍ତାଧାରା ମଧ୍ୟରେ ଏକ ବିଲକ୍ଷଣ ବ୍ୟତୀକ୍ରମ ଥିଲେ ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କର । ତାଙ୍କୁ ଏ ସମୟ ରେଓଡ଼ିଆ ଲିପି, ବ୍ୟାକରଣ, ଅଭିଧାନ, ମୁଦ୍ରଣ ବ୍ୟବସ୍ଥା କରିବାକୁ

କେତେ ଯେ ଶ୍ରମ ଓ ତ୍ୟାଗ ସ୍ୱୀକାର କରିବାକୁ ପଡିଥିବ ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ସେତେବେଳେ ଖ୍ରୀଷ୍ଟିୟାନ ପାଦ୍ରୀମାନେ ଖ୍ରୀଷ୍ଟଧର୍ମର ପ୍ରଚାର ପାଇଁ ପ୍ରାଦେଶିକ ଭାଷାରେ ପୁସ୍ତିକା ପ୍ରଣୟନ କରିବା ପାଇଁ ଓ ପ୍ରାଦେଶିକ ଭାଷାରେ ଧର୍ମପ୍ରଚାର କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । ସେହିମାନଙ୍କ ଉଦ୍ୟମରେ ଭାରତ ରେ ପ୍ରାଦେଶିକ ଭାଷା ମାନଙ୍କର ଅଭ୍ୟୁଦୟ ଘଟିଥିଲା । ମିଷ୍ଟର କେରୀ, ମିଷ୍ଟର ମାର୍ଶମ୍ୟାନ୍ ଓ ୱାର୍ଡ - ଧର୍ମ ପ୍ରଚାର ପାଇଁ ଭାରତର ପ୍ରାଦେଶିକ ଭାଷା ମାନଙ୍କ ଅଭିବୃଦ୍ଧି ରେ ସହାୟକ ହୋଇଥିଲେ । କେରୀ ସାହେବ ନୂତନ ସିଭିଲିୟାନ କର୍ମଚାରୀ ମାନଙ୍କର ବଂଗଳାଭାଷାର ଅଧାପକ ଥିଲେ । "କେରୀ ସାହେବ ନୂତନ ସିଭିଲିୟାନ କର୍ମଚାରୀ ମାନଙ୍କୁ ବିଭିନ୍ନ ଭାଷାରେ ଶିକ୍ଷା ଦେବା ପାଇଁ, ବିଭିନ୍ନ ଭାଷାର ଭାଷାଭାଷୀ ପଣ୍ଡିତ ମାନଙ୍କୁ ନିଯୁକ୍ତି ଦେଉଥିଲେ । କେରୀ ଏମାନଙ୍କ ସାହାଯ୍ୟ ରେ ଅଭିଧାନ, ବ୍ୟାକରଣ ସଂକଳନ କରାଇଥିଲେ ଓ ବାଇବେଲ ର ଅନୁବାଦ ମଧ କରାଇଥିଲେ"-ଓଡିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ଡଃ ନଟବର ସାମନ୍ତରାୟ । ଏହି ସୁଯୋଗ ପାଇଥିଲେ ଓଡିଶାର ଯାଜପୁର ଅଂଚଳର ପଣ୍ଡିତ ମୃତ୍ୟୁଞ୍ଜୟ । ସେତେବେଳେ ବଂଗଳା ପାଠ୍ୟ ପୁସ୍ତକ ପାଇଁ ଗୋଟିଏ କମିଟି ଗଠନ କରା ଯାଇଥିଲା ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର, ରାମରାମ ବସୁ, ରାଜୀବ ବନ୍ଦୋପାଧ୍ୟାୟ, କେରୀ ସାହେବ , ମାର୍ଶମାନ ସାହେବ ଏ କମିଟିର ସଭ୍ୟଥିଲେ । ସେହିମାନଙ୍କ ପ୍ରଯତ୍ନ ରେ ପାଠ୍ୟ ପୁସ୍ତକ ମାନ ବଂଗଳାରେ ପ୍ରକାଶିତ ହେଲା ଓ ବଂଗଳା ସାହିତ୍ୟର ଏକ ଦୃଢଭିତ୍ତି ଗଠିତ ହେଲା ।

ପ୍ରଥମ କରି ପାଠ୍ୟ ପୁସ୍ତକ ଖାତିରି ରେ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ବତ୍ରିସ ସିଂହାସନ ଓ ହିତୋପଦେଶ ବଂଗଳାରେ ଲେଖିଥିଲେ ଓ ପ୍ରଥମ କରି ମୃତ୍ୟୁଞ୍ଜୟଙ୍କ ଉଦ୍ୟମରେ ୧୮୦୪ ଖ୍ରୀ ରେ ଫୋର୍ଟ ଉଇଲିୟମ କଲେଜ ରେ ଓଡିଆ ଅକ୍ଷର ର ଛାଞ୍ଚ ତିଆରି ହୋଇଥିଲା । ଅବଶ୍ୟ ଓଡିଆରେ ବାଇବେଲ ଛାପା ହେବା କାମ ପାଇଁ ଓଡିଆ ଅକ୍ଷରର ଛାଞ୍ଚ ପ୍ରଥମେ ତାଙ୍କ ପ୍ରେରଣା ରେ ତିଆରି ହୋଇଥିଲା । ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ଓ ମିଷ୍ଟର କେରୀ ୧୮୦୯ ଖ୍ରୀଷ୍ଟାବ୍ଦରୁ ବାଇବେଲ ର ଓଡିଆ ଅନୁବାଦ କାର୍ଯ୍ୟ ଆରମ୍ଭକଲେ ସେମାନଙ୍କର ସେହି ଅସଂପୂର୍ଣ୍ଣ ଅନୁବାଦ କୁ ପରବର୍ତ୍ତୀ କାଳରେ ସଟନ ସାହେବ ପରିପୂର୍ଣ୍ଣ କରିଥିଲେ ।

୧୮୦୩ ରେ ଇଂରେଜ ମାନଙ୍କ ଓଡିଶା ଅଧିକାରର ବହୁ ପୂର୍ବରୁ ଓଡିଶା ତାର ନିଜସ୍ୱ ଶିକ୍ଷା, ସଭ୍ୟତା ରେ ବେଶ୍ କିଛି ଆଗୁଆଥିଲା ଯଦି ୧୮୦୧ ମସିହାରେ ଯାଜପୁର

ଅଂଚଳର ପଣ୍ଡିତଙ୍କୁ ଏକ ମର୍ଯାଦାପୂର୍ଣ୍ଣ ପଦବୀ ମିଳିପାରିଲା ତେଣୁ ଯାଜପୁର ଅଂଚଳ ଶିକ୍ଷା ସଂସ୍କୃତିର ଏକ ମୁଖ୍ୟ କେନ୍ଦ୍ର ଥିବା ଅଯୌକ୍ତିକ ନୁହେଁ । ତାଙ୍କ ସମ୍ବନ୍ଧରେ ଫୋର୍ଟ ଉଇଲିୟମ କଲେଜର ବିବରଣୀ ଓ ବିଭିନ୍ନ ପତ୍ରପତ୍ରିକାରୁ ଯାହା ସୂଚିତ ହୁଏ ସେ ସେଠାରେ ସଂସ୍କୃତ ଓ ବଂଗଳା ପାଶ୍ଚାତ୍ୟ ବିଦ୍ୱାନ ମାନଙ୍କୁ ପଢାଉଥିଲେ ଏ କାର୍ଯ୍ୟକୁ ସହଜରେ କରିବା ପାଇଁ ବଂଗଳା ଭାଷାର ବ୍ୟାକରଣ ଓ ଅଭିଧାନ ଇଂରେଜ ମାନଙ୍କ ପ୍ରେରଣାରେ ଲେଖିଥିଲେ । ତେଣୁ ଓଡିଆ ଭାଷା ପାଇଁ ବିଶେଷ କିଛି କରିବାକୁ ସୁଯୋଗ ପାଇଲେ ନାହିଁ । ତଥାପି ନିଜ ପ୍ରେରଣା ରେ ଓ ବ୍ୟକ୍ତିଗତ ଉଦ୍ୟମରେ ଯାହା କରିଛନ୍ତି ଯଥେଷ୍ଟ । ବିଶେଷ କରି ବାଇବେଲ ଛାପା ଆଳରେ ସେ ଓଡିଆ ଅକ୍ଷର ପ୍ରସ୍ତୁତି କେରୀଙ୍କ ସହାୟତା ରେ ଖ୍ରୀ ୧୮୦୪ ରେ କରାଇ ପାରିଛନ୍ତି । ଓଡିଆ ଭାଷା ଓ ଜାତି ପାଇଁ ସେ ସ୍ମରଣୀୟ ହୋଇରହିବେ । ବଂଗଳା ରେ ଅନେକ ପୁସ୍ତକ ରଚନା କରିବା ସହିତ ଅନେକ ସଂସ୍କୃତରୁ ବଂଗଳାରେ ଅନୁବାଦ କରି ବଂଗ ସାହିତ୍ୟ ରେ ସେ ଜଣେ ସମ୍ମାନାସ୍ପଦ ବ୍ୟକ୍ତିତ୍ୱ ହୋଇ ପାରିଛନ୍ତି । ଓଡିଆ ଭାଷା ପାଇଁ ସେ ଯାହା କରିଛନ୍ତି ତାକୁ ୨ଟି ପର୍ଯ୍ୟାୟ ରେ ବିଭକ୍ତ କରାଯାଇ ପାରେ ।

କ) ପାଶ୍ଚାତ୍ୟ ପଣ୍ଡିତ ମାନଙ୍କୁ ଓଡିଆ ଭାଷାର ପ୍ରାଚୀନତା, ସ୍ୱାତନ୍ତ୍ୟ ସମ୍ବନ୍ଧରେ ସେ ପ୍ରାଥମିକ ଉଚ୍ଚ ଧାରଣା ଦେବାକୁ ସମର୍ଥ ହୋଇଥିଲେ । ତାଙ୍କର ଏ ଉଚ୍ଚ ଧାରଣା ପାଇଁ ସଟନ୍ ସାହେବ, ଷ୍ଟାର୍ଲିଂ ସାହେବ, ବିମସ୍ ସାହେବ ଓ ଗ୍ରୀୟାରସନ ସାହେବ ଆଦି ଇଂରେଜ ବିଦ୍ୱାନ ମାନେ ଆମ ଭାଷା ଆନ୍ଦୋଳନ ବେଳେ ଓଡିଆ ଭାଷା ସପକ୍ଷ ରେ ମତ ଦେଇଯାଇଛନ୍ତି । ସେମାନେ ମଧ୍ୟ ଓଡିଆଶିଖି ଓଡିଆ ଭାଷା ସାହିତ୍ୟ ର ବିଶେଷ ଉନ୍ନତି କରିଯାଇଛନ୍ତି ।

ଖ) ମିଷ୍ଟର କେରୀ ଙ୍କୁ ପ୍ରବର୍ତ୍ତାଇ ଓଡିଆ ଅକ୍ଷର ୧୮୦୪ ରେ ପ୍ରସ୍ତୁତ କରାଇ ଓଡିଆ ବହି ପ୍ରକାଶନ ପାଇଁ ପଥ ସୁଗମ କରିଥିଲେ । ସେ ସୁଯୋଗ ରେ ସେ ଓଡିଆ ରେ ହିତୋପଦେଶ ରାଜାବଳୀ, ପ୍ରବୋଧ ଚନ୍ଦ୍ରିକା ଆଦି ପୁସ୍ତକ ଛପାଇ ପାରିଥିଲେ । ବାଇବେଲ ପରେ ଓଡିଆ ଛାପା ବହି ଇତିହାସ ରେ ଖ୍ରୀଷ୍ଟିୟାନ ପାଦ୍ରୀ ଙ୍କ ଜ୍ଞାନାରୁଣ ପତ୍ରିକା ପ୍ରଥମ ମୁଦ୍ରିତ ପତ୍ରିକାର ମାନ୍ୟତା ଲାଭ କରେ । ମୃତ୍ୟୁଞ୍ଜୟ ଙ୍କ ମୁଦ୍ରିତ ଓଡିଆ ବହିଗୁଡିକ ସେହିପରି ପ୍ରଥମ ମୁଦ୍ରିତ ପୁସ୍ତକ ଭାବେ ସ୍ମରଣୀୟ । ଆମ ଭାଷା ଆନ୍ଦୋଳନ ବେଳେ ଇଂରେଜ ପ୍ରଶାସନ କୁ ଆମ ଭାଷା ଆନ୍ଦୋଳନ ର ରଥିମାନେ ବିଭିନ୍ନ ଦାବୀ ଉପସ୍ଥାପନ କରୁଥିଲେ । ଓଡିଆ ଏକ ପ୍ରାଚୀନ ଭାଷା ଏହା ଆଦୌ ବଂଗଳା ର ଉପଭାଷା

ନୁହେଁ ଇତ୍ୟାଦି । ପ୍ରମାଣ ସ୍ୱରୂପ ସେମାନେ ଦେଖାଉଥିଲେ ପ୍ରାଚୀନ ଓଡିଆ ସାହିତ୍ୟର ତାଳପତ୍ର ପୋଥି ର ସମ୍ଭାର ସହିତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ଙ୍କ ବତ୍ରିସସିଂହାସନ ଓ ହିତୋପଦେଶର ମୁଦ୍ରିତ ପୁସ୍ତକ ।

ଉନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଓଡିଶାକୁ ଓ ଓଡିଆ ମାନଙ୍କୁ ହତାଦର କରୁଥିବା ପଣ୍ଡିତ ମାନଙ୍କ ଗହଣରେ ଥାଇ ଅସୀମ ସାହସ ଓ ପାଣ୍ଡିତ୍ୟ ପ୍ରଦର୍ଶନ କରି ମାତୃଭାଷା ପାଇଁ କିଛି କାମ କରିବାର ନିଷ୍ଠା ତାଙ୍କୁ ସର୍ବକାଳେ ସମ୍ମାନ ଦେଇ ଚାଲିବ । ତାଙ୍କ ରଚିତ ସମସ୍ତ ବଂଗଳା ଓ ଓଡିଆ ପୁସ୍ତକ ସଂଗୃହୀତ ହୋଇ ପ୍ରକାଶ ହୋଇ ପାରିଲେ, ଓଡିଆ ଭାଷା ପ୍ରେମୀଙ୍କ ପାଇଁ ଏକ ପ୍ରେରଣା ଦାୟକ ଉତ୍ସହୋଇ ରହିପାରନ୍ତା । ତାଙ୍କର ଅଭିଧାନ, ବ୍ୟାକରଣ ଓଡିଆ ଭାଷା ସାହିତ୍ୟ ଇତିହାସ ରେ ଏକ ସାରସ୍ୱତ ସଂପଦ । ସମସ୍ତ ପ୍ରତିକୂଳ ପରିବେଶ ରେ ଓଡିଆ ଭାଷା ସାହିତ୍ୟ ପାଇଁ ନିରଳସ ଭାବେ କାର୍ଯ୍ୟ କରିଥିବା ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ଙ୍କ ଜୀବନ ସମ୍ବନ୍ଧ ରେ ଅଧିକ ଗବେଷଣା ଆବଶ୍ୟକ ।

ସହାୟକ ଗ୍ରନ୍ଥ :


୧. ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ - ସଂ - ଗୋପାଳନ୍ଦ୍ର ପ୍ରହରାଜ

୨ ଓଡିଆ ସାହିତ୍ୟର ଇତିହାସ ( ୧୮୦୩ ରୁ ୧୯୨୦ ) ଡଃ ନଟବର ସାମନ୍ତରାୟ

୩. ଓଡିଆ ଆନ୍ଦୋଳନ ର ଇତିହାସ - ପଣ୍ଡିତ ବାଇକୋଳି ମହାପାତ୍ର

୪. କୋଣାର୍କ ପତ୍ରିକା ଓଡିଆ ସାହିତ୍ୟ ଏକାଡେମୀ

୫. The Evolution Indian Culture - L.N. Lunia.




# ନାଟ୍ୟ ରାଜଦୂତ - ଗୋପାଳ ଉଡେ

ଯୁଗେ ଯୁଗେ ମାନବ ମନୋରଂଜନ ର ଆବଶ୍ୟକତା କୁ ପ୍ରାଧାନ୍ୟ ଦେଇଆସିଛି । ଶିକ୍ଷା, ସଭ୍ୟତା ଓ ସଂସ୍କୃତିକୁ ମନୋରଂଜନ ଧର୍ମୀ କରିବା ପାଇଁ ଚେଷ୍ଟା କରିଚାଲିଛି । ମନୋରଂଜନ ର ଧାରା, ସବୁ ସମୟରେ ନୂତନତ୍ୱ କୁ ସ୍ୱାଗତ ଜଣାଇଛି । ପ୍ରାକ ଐତିହାସିକ ଯୁଗରୁ କର୍ମକ୍ଳାନ୍ତି ରୁ କିଛି ମାନସିକ ସତେଜତା ପାଇବା ପାଇଁ ମଣିଷ ଜାତି ସ୍ୱୟଂ ଅନୁପ୍ରେରିତ ହୋଇ କିଛି ଚିତ୍ତ ବିନୋଦନ କ୍ରୀଡାର ଆୟୋଜନ କରିଛି । ଏ ଗୁଡ଼ିକୁ ଲୋକ ନୃତ୍ୟ, ଲୋକନାଟ୍ୟ ବା ଲୋକ ସଂଗୀତ ଯାହା କୁହାଗଲେ ମଧ ଉଦ୍ଦେଶ୍ୟ ଏକ, ଓଡିଆ ର ବିଭିନ୍ନ ସ୍ଥାନ ରେ ବିଭିନ୍ନ ପ୍ରକାରର ଲୋକନୃତ୍ୟ, ରାସ, ପାଲା, ସୁଆଙ୍ଗ ଲୀଳା, ମୋଗଲତାମସା, ଦାସକାଠି, ଛଉନୃତ୍ୟ, ଦଣ୍ଡନୃତ୍ୟ, ଘୋଡାନାଚ ଆଦି ଦେଖାଯାଏ । ଏହି ଲୋକ ନାଟ୍ୟ ଗୁଡିକର ସୁକ୍ଷମ ସମାହାର ଓ ସଂଗଠିତ ଆଧୁନିକ ସଂସ୍କରଣ ହେଉଛି ଯାତ୍ରା । ଆଧୁନିକ ଓଡିଆ ଯାତ୍ରା ର ମୂଳ, ଏ ମାଟିର ଲୋକନୃତ୍ୟ ପରଂପରା ମଧ୍ୟରେ ରହିଛି । ପଣ୍ଡିତ ମାନେ ଏହାର ମୂଳଉତ୍ସ ନିରୁପଣ କ୍ଷେତ୍ରରେ ଏକାଧିକ ମତ ପୋଷଣ କରିଥାନ୍ତି । ଆଧୁନିକ ଓଡିଆ ନାଟକ ପରି ଓଡିଆ ଯାତ୍ରା ମଧ ବଂଗଳା ଯାତ୍ରାର ଏକ ପ୍ରଭାବିତ ରୂପ ଓ ୧୮୭୦ ପରେ ଓଡିଆ ଯାତ୍ରାର ବିକଶିତ ରୂପ ଦେଖିବାକୁ ମିଳେ ବୋଲି କେତେକ ଆଲୋଚକ ମତପ୍ରକାଶ କରିଥାନ୍ତି । ଯାଜପୁର ର ଗୋପାଳ ଦାସଙ୍କ କୃତି ଓ କାର୍ଯ୍ୟକୁ ଅନୁଧ୍ୟାନ କଲେ ଏ ତଥ୍ୟ ଭ୍ରମାତ୍ମକ ବୋଲି ମନେ ହୁଏ । ବଂଗଳା ଯାତ୍ରାକୁ ଓ ମଂଚ ନିର୍ମାଣ କଳା କୁ ପ୍ରଭାବିତ କରିଥିବା ଗୋପାଳ ଉଡେଙ୍କ ଜୀବନ ବହୁତ ତଥ୍ୟ ଯୋଗାଏ ।

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ରେ ଯାତ୍ରାର ସଂଜ୍ଞା ବା ଅର୍ଥ ହେଉଛି ଦେବତାଙ୍କ ଉତ୍ସବ ଓ ପଟ୍ଟହୀନ ଗ୍ରାମ୍ୟ ନାଟ୍ୟାଭିନୟ । ଡଃ ମାନସିଂ ଯାତ୍ରାକୁ ଲୀଳା, ସୁଆଙ୍ଗ ଆଦିର ମଧୁର ସମାହାର ବୋଲି ମତ ଦେଇଛନ୍ତି । Singing a play in stead of talking or a play on which large portions of words are sung. ଯାତ୍ରାର ବହୁ ସଂଜ୍ଞାରୁ ଏହାର ସଂଗୀତ ପ୍ରବଣତା, ହାସ୍ୟରସ, ଧାର୍ମିକ କାହାଣୀ, ଅଭିନୟ ଚାତୁରୀ ଇତ୍ୟାଦି ଗୁରତ୍ୱପୂର୍ଣ୍ଣ ବୋଲି ଗୃହୀତ । ଉନବିଂଶ ଶତାବ୍ଦୀ ର ଶେଷ ଭାଗ ବେଳକୁ ଓଡିଶାରେ ବହୁ ଉନ୍ନତ ମାନର ଯାତ୍ରାଦଳ, ଯାତ୍ରା ଓସ୍ତାଦ ଅଭିନେତା ଓ ସଂଗଠକ ମାନଙ୍କର ବିବରଣୀ ମିଳେ ।

କିନ୍ତୁ ଉନବିଂଶ ଶତକ ର ପ୍ରଥମ ପାଦରେ ଗୋପାଳଦାସଙ୍କ କୃତିତ୍ୱ ଓଡିଶା ର ଯାତ୍ରା ଇତିହାସ ଏକ ସ୍ମରଣୀୟ ଦିଗ । ଯାଜପୁରର ଏକ କୂଳୀନ କରଣ ପରିବାର ରେ ଗୋପାଳ ଦାସଙ୍କ ଜନ୍ମ । ସେ ଗୀତିନାଟ୍ୟ ମାନ ଲେଖୁଥିଲେ, ଯାତ୍ରାଦଳ ଗଢିଥିଲେ, ମଂଚ ନିର୍ମାଣ କଳାରେ ଧୂରନ୍ଧର ଥିଲେ ଭଲ ନିର୍ଦ୍ଦେଶକ ଥିଲେ, ଓ ନିଜେ ମଧ୍ୟ ଅଭିନୟ କରି ଦର୍ଶକ ମାନଙ୍କୁ ଚକିତ କରିପାରୁଥିଲେ । ପୁଣି ଆମ ଓଡିଶା ମାଟିରେ ନୁହେଁ ବରଂ ଆମ ପ୍ରତିବେଶୀ ବଂଗ ରାଜ୍ୟ ର ହୃତ୍‌ପିଣ୍ଡ କଲିକତା ମାଟିରେ । କେତେକ ଆଲୋଚକ ତାଙ୍କୁ ବ୍ରାହ୍ମଣ ବୋଲି କହିଥିଲା, ବେଳେ ପଣ୍ଡିତ ବାଇକୋଳି ମହାପାତ୍ର ତାଙ୍କୁ କରଣ (କାୟସ୍ଥ) ବୋଲି କହିଛନ୍ତି । ଆଲୋଚକ ଡଃ ହେମନ୍ତ କୁମାର ଦାସ ତାଙ୍କ ପୁସ୍ତକ ଓଡିଆ ନାଟକ ର ବିକାଶଧାରା ରେ ଗୋପାଳ ଉଡେ ସମ୍ବନ୍ଧରେ କହିଛନ୍ତି । "ବଂଗଳା ଯାତ୍ରା ନାଟକ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିବା ଗୋପାଳ ଚନ୍ଦ୍ର ଦାସ (ଗୋପାଳ ଉଡେ) ନାମରେ ଲୋକପ୍ରିୟ) ମଧ୍ୟ ଓଡିଶାର ସନ୍ତାନ । ଯାତ୍ରା ନାଟକ ସମ୍ବନ୍ଧରେ ତାଙ୍କର ଆସକ୍ତି ଯେ ଓଡିଆ ଯାତ୍ରା ପରଂପରା ରୁ ଉଦ୍‌ଭୂତ ଏହା ନକହିଲେ ମଧ୍ୟ ଚଳେ । ଏହାଙ୍କ ସମୟ ଉନବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ । ପରେ ଏହି ନାମରେ କେନ୍ଦ୍ରାପଡା ଅଂଚଳରୁ ଜଣେ ଯାତ୍ରାକାର ବାହାରିଥିଲେ ଯାହାଙ୍କର ନାମ ମଧ୍ୟ ଶ୍ରୀ ଗୋପାଳ ଦାସ । ଏହାଙ୍କ ସମୟ ୧୮୮୯ - ୧୯୩୫) ।

ଏହି ଗୋପାଳ ଉଡେଙ୍କ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ଏ କଥାକୁ ଧ୍ୟାନ ଦେବା ଉଚିତ । ଗୋପାଳ ଦାସ ନାମରେ ୨ ଜଣ ଯାତ୍ରାକାର ଥିଲେ । ଉଭୟଙ୍କ କର୍ମଭୂମି କଲିକତା । ପ୍ରଥମ ଗୋପାଳ ଦାସ, ଗୋପାଳ ଉଡେ ନାମରେ ଲୋକପ୍ରିୟ । ଏହାଙ୍କ ସମୟ ସଠିକ୍ ଭାବେ ନିରୁପିତ ହୋଇ ପାରିନାହିଁ । ସେ ଯାଜପୁର ମାଟିର ସନ୍ତାନ । ଦ୍ୱିତୀୟ ଗୋପାଳ ଦାସ କେନ୍ଦ୍ରାପଡା ଚଉଦକୁଲାଟ ନିବାସୀ ବ୍ରାହ୍ମଣ । ଓଡିଶା ଓ ବଂଗ ରେ ତାଙ୍କ ଯାତ୍ରାଦଳ ବହୁ ସୁଖ୍ୟାତି ଅର୍ଜନ କରିଥିଲା । ସେ ଓଡିଆରେ ବହୁ ଗୀତିନାଟ୍ୟ ପୁସ୍ତକ ରଂଗସଭା, କଂସବଧ, ପ୍ରଭାସମିଳନ, କାଞ୍ଚିକାବେରୀ ଆଦି ଲେଖିଥିଲେ ତାଙ୍କ ସମୟ (୧୮୮୫ - ୧୯୩୫) ଖ୍ରୀ ଏଠାରେ ଯାଜପୁର ନିବାସୀ ଗୋପାଳ ଉଡେ ସମ୍ବନ୍ଧରେ ଆଲୋଚନା କରାଯାଉଛି ।

ଗୋପାଳ ଦାସ ଯାଜପୁର ଅଂଚଳରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଗ୍ରାମ ପିତୃପରିଚୟ ଓ ଜନ୍ମସମୟ ଠିକ୍ ଭାବେ ନିରୁପିତ ହୋଇନାହିଁ । ତାଙ୍କ ଜନ୍ମ ତାରିଖ ସମ୍ବନ୍ଧରେ ପଣ୍ଡିତ ବାଇକୋଳି ମହାପାତ୍ର ଏକ ଅନୁମାନିକ ତାରିଖ ଦେଇଛନ୍ତି । ତାଙ୍କ

ମତରେ "ଗୋପାଳଉଡେଙ୍କ ଜନ୍ମ ୧୭୧୦ ଖ୍ରୀ ରେ ଆଖପାଖ ହେବ । ବଂଗଳାର ରାଜଧାନୀ କଲିକତା ରେ ରହୁଥିଲେ । ବିଶିଷ୍ଟ ବଂଗଳା ନାଟ୍ୟକାର ରାମଧନଙ୍କ ସମକାଳୀନ ଯାତ୍ରାକାର ଥିଲେ ।" ସ୍ୱର୍ଗତ ନଗେନ୍ଦ୍ରନାଥ ବସୁ ଙ୍କ ପ୍ରଣୀତ ବଂଗଳା ବିଶ୍ୱକୋଷ (ପୃଷ୍ଠା ୧୭୦) ରେ ଲେଖିଛନ୍ତି "ରାମଧନେର ସମକାଳେ ଗୋପାଳ ଚନ୍ଦ୍ର ଦାସ ନାମକ ଇନୈକ କଟକୀ (ଉତ୍କଳ ଦେଶୀୟ) କାୟସ୍ଥ କଲିକତାର ଚମ୍ପାତାଲାୟେ ଥାକିୟା ନାନା ବ୍ୟବସାୟେ ଲିପ୍ତ ଛିଲେନ । ତିନି ଓ ଖୋୟାଲେ ପଡିୟା ବିଦ୍ୟାସୁନ୍ଦର ଯାତ୍ରାର ଦଲ ଗଠନ କରେନ ।

ସେହିପରି ହେମେନ୍ଦ୍ରନାଥ ଦାସଗୁପ୍ତା ତାଙ୍କ ପ୍ରସିଦ୍ଧ ଗ୍ରନ୍ଥ The Indian Stage Vol - I, Page - 130 ରେ ଗୋପାଳ ଉଡେଙ୍କ ସମ୍ବନ୍ଧରେ ନିମ୍ନ ସୂଚନା ଦେଇଛନ୍ତି ।

Gopal Oray was born in Jajpur of Cuttack. He was a hawker of stationary articles at Calcutta. He organised a Jatra Party and achieved success. The song of his vidya Sundar are still sung in Bengal. He was handson when he appeared in a roll of a woman, it was very difficult to recognise him as a man.

ଗୋପାଳ ଦାସ କରଣ ଜାତିର ଲୋକ । ସେ ଜଣେ କ୍ଷୁଦ୍ର ବ୍ୟବସାୟୀ ଥିଲେ କଲିକତା ନଗରରେ ଷ୍ଟେସନାରୀ ଦ୍ରବ୍ୟ ବିକ୍ରିବାଟା କରି ନିଜର ପେଟ ପୋଷୁଥିଲେ, କଲିକତାର ଚମ୍ପାତାଲା ନାମକ ସ୍ଥାନରେ ସେ ରହୁଥିଲେ । ନିଜର ନାଟ୍ୟ ପ୍ରତିଭା ଜନିତ ଆବେଗ ରେ ପରିଚାଳିତ ହୋଇ ଗୋଟଏ ଯାତ୍ରା ଦଳ ଗଠନ କରିଥିଲେ । ସେ ଯାତ୍ରା ଦଳର ନାମ ଥିଲା ବିଦ୍ୟାସୁନ୍ଦର ଯାତ୍ରାଦଳ । ସେ ପ୍ରଥମେ ଓଡିଆ ଗୀତିନାଟ୍ୟ ର ଅଭିଜ୍ଞତା କୁ ପାଥେୟ କରି ପ୍ରଥମେ ବଂଗଳା ଭାଷାରେ ଗୀତିନାଟ୍ୟ ଲେଖିଥିଲେ । ବଂଗଳା କବି ଭରତ ଚନ୍ଦ୍ର ଙ୍କ ବିଦ୍ୟାସୁନ୍ଦର କାବ୍ୟ ଖୁବ୍ ଲୋକପ୍ରିୟ ଥିଲା । ସେ ଏ କାବ୍ୟର ବିଷୟ ବସ୍ତୁ ଓ ଓଡିଶା ପ୍ରାଚୀନ ଓ ମଧ୍ୟଯୁଗ ସଂଗୀତ ର ମାଧୁର୍ଯ୍ୟ କୁ ସମୀକରଣ କରି ବିଦ୍ୟାସୁନ୍ଦର ନାମକ ଏକ ଗୀତିନାଟ୍ୟ ଲେଖି କଲିକତା ରେ ଅଭିନୟ ଆରମ୍ଭ କରିଥିଲେ । ବିଦ୍ୟାସୁନ୍ଦର ନାଟକ ତାଙ୍କୁ ସେଠି ବହୁତ ପ୍ରସିଦ୍ଧ ଆଣି ଦେଇଥିବାରୁ ଯାତ୍ରା ଦଳର ନାମ ତାଙ୍କ ଶ୍ରେଷ୍ଠ କୃତି ବିଦ୍ୟାସୁନ୍ଦର ପାଇଁ ବିଦ୍ୟାସୁନ୍ଦର ଯାତ୍ରାଦଳ ବୋଲି ନାମକରଣ କରିଥିଲେ । ଏପରି ସମ୍ଭାବନା କୁ ଏଡାଇ ଦିଆଯାଇ ପାରିବ ନାହିଁ । ସେ ନିଜେ ଗୀତିନାଟ୍ୟ ଗୀତି କବିତା ବଂଗଳା ଭାଷାରେ ଲେଖୁଥିଲେ । ନାଟ୍ୟଦଳର ସଂଗଠକ, ଅଭିନେତା ଓ ଉସ୍ତାଦ ବି ଥିଲେ । ଦକ୍ଷ ଅଭିନେତା ଭାବେ ମଧ୍ୟ ସେ ସ୍ମରଣୀୟ । ବିଶେଷ କରି ନାରୀ ଭୂମିକା ରେ ସେ ସୁନ୍ଦର ଭାବେ ଅଭିନୟ କରିପାରୁଥିଲେ । ସେ ଏପରି ଚେହେରା ପାଇଥିଲେଯେ

ନାରୀ ଭୂମିକାରେ ପରିଛଦ ମଣ୍ଡିତ ହୋଇ ଆସିଲେ ତାଙ୍କୁ ପୁରୁଷ ବୋଲି କେହି ବାରିପାରୁନଥିଲେ । ସେତେବେଳେ ଯଦିଓ ବଂଗଳାରେ କାଁ ଭାଁ କେଉଠି ଅଭିନୟ କ୍ଷେତ୍ରକୁ ଗଣିକା ମାନେ ପ୍ରବେଶ କରିଥିଲେ କିନ୍ତୁ ଏ ଦରିଦ୍ର ଗୋପାଳ ଉଡେ ର ଯାତ୍ରାଦଳରେ ନାରୀ ଭୂମିକା ପୁରୁଷ ମାନଙ୍କୁ ନିର୍ବାହ କରିବାକୁ ପଡୁଥିଲା । ଯୁଗ ପରେ ଯୁଗ ବିତିଯାଇଛି କିନ୍ତୁ ବଂଗଳା ମାଟିରେ ବିଦ୍ୟାସୁନ୍ଦର ଯାତ୍ରାଦଳ ର ସଂଗୀତ ର ମାଦକତା ଏବେ ମଧ୍ୟ ଅନୁରଣିତ । ପଶ୍ଚିମ ବଂଗର ର ଜଣେ ରାଜା କୃଷ୍ଣଚନ୍ଦ୍ରଙ୍କ ସଭାରେ ସେ ଉଚ୍ଚ ପ୍ରଶଂସିତ ହୋଇଥିବାର ପଣ୍ଡିତ ବାଇକୋଳି ମହାପାତ୍ର ତାଙ୍କ ଗ୍ରନ୍ଥ ଓଡିଶା ଆନ୍ଦୋଳନର ଇତିହାସ ରେ ସୂଚନା ଦେଇଛନ୍ତି । ବଂଗରେ ତାଙ୍କ ରଚନା ଗୁଡିକ ର ନାମ "ଗୋପାଳ ଉଡେ ର ଟପ୍‌ପା" ବୋଲି ପରିଚିତ ଓ ଆଜିଯାଏଁ ମଧ୍ୟ ଲୋକପ୍ରିୟ । ଜଣେ ଓଡିଆର ବଂଗଳା ନାଟ୍ୟ ସାହିତ୍ୟକୁ ଏତାଦୃଶ ଅବଦାନ କମ୍ ଗୌରବର ବିଷୟ ନୁହେଁ । ଡଃ ରାଧାନାଥ ମଧ୍ୟ ତାଙ୍କ ବ୍ରଜସୁନ୍ଦର ଦାସ ଜୟନ୍ତୀ ଅଭିଭାଷଣ ରେ ଗୋପାଳ ଉଡେଙ୍କ ସମ୍ବନ୍ଧ ରେ ଅନୁରୂପ ମତ ପ୍ରକାଶ କରିଛନ୍ତି । "ସେ ଯାଜପୁର ର ଅଖ୍ୟାତ ପଲ୍ଲୀ ର ବିଖ୍ୟାତ ଲୋକ । ତାଙ୍କ ରଚିତ ବଂଗଳା ଗୀତିନାଟ୍ୟ ଗୁଡିକରେ ଓଡିଆ ମଧ୍ୟଯୁଗୀୟ କବିତା, ଚମ୍ପୂ, ଛାନ୍ଦ, ଚଉପଦୀ ଆଦିକୁ ଏପରି ଭାବରେ ସାମିଲ କରି ପାରୁଥିଲେ ଯେ, ତାହା ବଂଗର ଦର୍ଶକ ମାନଙ୍କୁ ଅଭିଭୂତ କରି ଦେଉଥିଲା । ବିଶେଷ କରି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ଗୋପାଳ କୃଷ୍ଣଙ୍କ ସଂଗୀତ ଗୁଡିକୁ ବଂଗଳା ଗୀତି ନାଟ୍ୟ ରେ ପରିବେଷଣ କରି କଲକତା ର ଦର୍ଶକ ମାନଙ୍କର ମନୋରଂଜନ କରିପାରୁଥିଲେ । ମଧ୍ୟଯୁଗୀୟ ଓଡିଆ ସାହିତ୍ୟର ପ୍ରଚାର ଓ ପ୍ରସାର ତାଙ୍କ ମାଧ୍ୟମରେ ପ୍ରତିବେଶୀ ରାଜ୍ୟରେ ହୋଇପାରିଥିଲା ଡଃ ରାଧାନାଥ ରଥ ମଧ୍ୟ ସୂଚନା ଦେଇଛନ୍ତି ଯେ ବଂଗଳା ନାଟ୍ୟ ଓ ସଂଗୀତ ରାଜ୍ୟ କୁ ତାଙ୍କର ମହାନ ଯୋଗଦାନ କୁ G.S. Mitra ମଧ୍ୟ ତାଙ୍କ ଗ୍ରନ୍ଥ ବଂଗ ସାହିତ୍ୟ ର ଇତିହାସ ପୁସ୍ତକ ରେ ଖୁବ୍ ପ୍ରଶଂସା କରିଛନ୍ତି" । ଓଡିଆ ଭାଷାରେ ତାଙ୍କର କୌଣସି ମୁଦ୍ରିତ ପୁସ୍ତକ ଥିବାର ଏ ପର୍ଯ୍ୟନ୍ତ ଜଣାଯାଇନାହିଁ କାରଣ ଯେଉଁ ସମୟରେ ସେ ଏ ସବୁ କାର୍ଯ୍ୟ କରୁଥିଲେ ସେତେବେଳେ କୁ ମୁଦ୍ରଣ ଯନ୍ତ୍ର କଲିକତା ରେ ଥିଲେ ମଧ୍ୟ ଓଡିଆ ଅକ୍ଷର ଛାଞ୍ଚ ବି ତିଆରି ହୋଇ ନଥିଲା । ୧୮୦୪ ରେ ଫୋଟ ଉଇଲିୟମ କଲେଜ ରେ ବାଇବେଲ ଛାପା ହେବା ପାଇଁ ଓଡିଆ ଅକ୍ଷରରେ ଛାଞ୍ଚ ତିଆରି ହୋଇଥିଲା ।

ସେ କେବଳ ବଂଗଳର ଜଣେ କୃତି ଯାତ୍ରାକାର ନଥିଲେ ବରଂ ତା ଠାରୁ ବେଶୀ ଗୌରବ ପାଇଥିଲେ ବଂଗ ନାଟ୍ୟ ଶାଳା ନିର୍ମାଣର ଜଣେ ପ୍ରବାଦ ପୁରୁଷ ଭାବେ ବଂଶୀୟ ନାଟ୍ୟଶାଳା ପ୍ରତିଷ୍ଠା ସହିତ ଗୋପାଳ ଉଡେ ଙ୍କ ନେତୃତ୍ୱ କୁ ୧୮୬୭ ମସିହା ଜୁଲାଇ

·୧୪ ତାରିଖ ରେ ଅହମଦାବାଦ ରୁ ପ୍ରେରିତ ଏକ ପତ୍ର ରେ ବରିଷ ବଂଗ ନାଟ୍ୟକାର ଜ୍ୟୋତିରୀନ୍ଦ୍ରନାଥ ଠାକୁର ସ୍ୱୀକାର କରିଛନ୍ତି (ଓଡିଶାର ଯାତ୍ରା ରବି ନାରାୟଣ ମହାପାତ୍ର)

ବଂଗୀୟ ଆଲୋଚକ ଶଚୀନ ସେନଗୁପ୍ତ ତାଙ୍କ ପ୍ରସିଦ୍ଧ ପୁସ୍ତକ "ବଂଗଳା ନାଟକ ଓ ନାଟ୍ୟଶାଳା" ରେ ମତ ଦେଇଛନ୍ତି । ଗୋପାଳ ଉଡେର ଯାତ୍ରା ଦେଖେ ଗୁଣେନ୍ଦ୍ରନାଥ ଠାକୁର ଜ୍ୟୋତିରୀନ୍ଦ୍ର ନାଥ ଠାକୁର ପ୍ରଭୃତି ଜୋଡାଶଙ୍କେର ଠାକୁର ବାଡିତେ ଏକଟି ନାଟ୍ୟଶାଳା ପ୍ରତିଷା କରେନ ।

ବଂଗଳା ନାଟ୍ୟଶାଳା ପ୍ରତିଷା ପଛରେ ବିଶେଷ କରି ଯୋଡାଶଂକୋ ଥିଏଟର ପ୍ରେକ୍ଷାଳୟ ର ପ୍ରତିଷା ପଛରେ ଯାଜପୁର ର ଗୋପାଳ ଉଡେଙ୍କ ଅବଦାନ ସ୍ୱୀକୃତ ବିଶେଷ କରି ଜ୍ୟୋତିରୀନ୍ଦ୍ର ନାଥ ଠାକୁରଙ୍କ ୧୮୬୭ ଖ୍ରୀ ରେ ଜୁଲାଇ ୧୪ ତାରିଖ ପତ୍ର ରୁ ବଂଗଳା ପ୍ରେକ୍ଷାଳୟ / ରଂଗମଂଚ ପ୍ରତିଷା ପଛରେ ଗୋପାଳ ଉଡେଙ୍କ ଯାତ୍ରାର କି ଭୂମିକା ରହିଛି ତାହା ଜଣାପଡେ । ସେ ଚିଠିର କ୍ରିୟଦଂଶ ଏହିପରି ।

My dear goono dada

It is but few years a go that I received a letter from your self and one from Jadoo.

The Original of Joda Sanko Threatre is now hidden in the deep fold of rusty antiqunity. xx It was gopal Orias's Jatra that suggested the idea of projecting a threatre. It was gangooly (Sarada Prasad) You and I that proposed it and I do not think that Jadoo can claim the credit of being one of the projector.

ଗୋଟିଏ ଦରିଦ୍ର ଓଡିଆ କ୍ଷୁଦ୍ର ବ୍ୟବସାୟୀ କୁ ଆଦରରେ ହେଉ ବାତାହଲ୍ୟ ରେ ହେଉ ଗୋପାଲ ଉଡେ ବୋଲି ସମ୍ବୋଧନ କରାଯାଉଥିଲା ସେ ବଂଶ ଦେଶରେ ଏପରି ବିଖ୍ୟାତ ହୋଇ ପାରିଲେ କାହିଁକି ? ବିଶେଷ କରି ଗଭୀର ସଂସ୍କୃତି ସମ୍ପନ୍ନ ରବୀନ୍ଦ୍ର ନାଥ ଠାକୁର ଙ୍କ ପରିବାର ସହିତ କେଉଁ ଯୋଗ୍ୟତା ରେ ସାମିଲ ହୋଇ ପାରିଥିଲେ ? ଗୁଣେନ୍ଦ୍ର ନାଥ ଠାକୁର, ଜ୍ୟୋତିରୀନ୍ଦ୍ର ନାଥ ଠାକୁର ଏମାନେ ରବୀନ୍ଦ୍ର ନାଥ ଙ୍କ ନିକଟ ସମ୍ପର୍କୀୟ । ଜ୍ୟୋତିରୀନ୍ଦ୍ର ନାଥ ଠାକୁର ଜଣେ ପ୍ରସିଦ୍ଧ ନାଟ୍ୟକାର, ଅଭିନେତା ଓ ନିର୍ଦ୍ଦେଶକ । ଯୁଗେ ଯୁଗେ ନାଟ୍ୟ ସାହିତ୍ୟ ଗ୍ରନ୍ଥ ରେ ବୀର କିଶୋର ଦାସ ସେମାନଙ୍କ ପରିଚୟ ର ସୂଚନା ଦେଇଛନ୍ତି । "ବିଶ୍ୱକବି ପରିବାର ର ଲୋକଥିଲେ ନାଟ୍ୟପ୍ରେମୀ କବିଙ୍କର ବଡଭାଇ ଜ୍ୟୋତିରୀନ୍ଦ୍ର ନାଥ ଠାକୁର କେବଳ ଜଣେ ଉଚ୍ଚକୋଟୀର ଅଭିନେତା ନଥିଲେ ସେ ବି ଥିଲେ ଜଣେ କୃତି ନାଟ୍ୟକାର । ରବୀନ୍ଦ୍ରନାଥ କୁ ବାଲ୍ୟକାଳରୁ ସେ ନାଟକ ପ୍ରତି ଆକୃଷ୍ଟ କରିଥିଲେ । ରବୀନ୍ଦ୍ରନାଥ କୁ ମାତ୍ର ସେତେବେଳେ ୧୬ ବର୍ଷ । ସେତେବେଳେ

ସେ ଉଚ୍ଚକୋଟୀର ଅଭିନୟ ପାଇଁ ପ୍ରସିଦ୍ଧି ଅର୍ଜନ କରିଥିଲେ । ଏ ସୂତ୍ରରେ ଗୋପାଳ ଉଡେ ଙ୍କ ଅବଦାନ ମଧ୍ୟ ସ୍ମରଣୀୟ । ତାଙ୍କ ବିଦ୍ୟାସୁନ୍ଦର ଯାତ୍ରାଦଳର ପ୍ରଭାବ ଅନନ୍ୟ । ଜୋଡାଶଂକୋ ଥିଏଟର ତାଙ୍କ ଚିନ୍ତାଧାରା ର ଏକ ଅମ୍ଳାନ କୃତି । ରବୀନ୍ଦ୍ରନାଥ ସ୍ୱୟଂ ସେ ଥିଏଟର ରୁ ଅଭିନୟ ଜୀବନ ୧୬ ବର୍ଷ ରୁ ଆରମ୍ଭ କରିଥିଲେ । ବଂଗମାଟି ର ଏତେ ବଡବଡ ପ୍ରତିଷ୍ଠିତ ସାହିତ୍ୟିକ, ନାଟ୍ୟକାର କେଉଁ ଗୁଣ ପାଇଁ ସ୍ୱଳ୍ପ ଶିକ୍ଷିତ ଦରିଦ୍ର ଓଡିଆ ଗୋପାଳ ଉଡେଙ୍କୁ ଆପଣାର କରିପାରିଥିଲେ ।

ତାହାର କାରଣ ଥିଲା ଓଡିଆ ଯାତ୍ରା ର ପ୍ରାଚୀନ ପ୍ରଭାବଶାଳୀ ମନୋରଞ୍ଜନ ଧର୍ମୀ ନାଟ୍ୟଶୈଳୀ । ତେଣୁ ଗୋପାଳ ଉଡେଙ୍କ କୃତି ପ୍ରମାଣ କରିଦେଇଛି ଯେ ଓଡଆ ଯାତ୍ରାର ପ୍ରାଚୀନତା ଓ କଳାତ୍ମକ ବଳିଷ୍ଠ ଦିଗକୁ । ତେଣୁ ଆଲେଚକ ମାନଙ୍କ, ୧୮୭୦ ଖ୍ରୀ ପରେ ଓଡିଆ ଯାତ୍ରା ବଂଗଯାତ୍ରା ପ୍ରଭାବରେ ବିକଶିତ ହୋଇଥିବା । ତଥ୍ୟ ଭ୍ରମାତ୍ମକ । ଗୋପାଳ ଉଡେ ନିଜ ଉଦ୍ୟମ ରେ ପ୍ରାଚୀନ ଉତ୍କଳର ମଂଚକଳା ସଂଗୀତ ଓ ଅଭିନୟ ଚାତୁରୀ ପ୍ରଚାର କରିଥିଲେ । ସେ ବେଳ ରେ ବଂଗ ଦର୍ଶକ ମାନଙ୍କୁ ଓଡିଶୀ ସଂଗୀତ, ଚମ୍ପୂ, ଚଉପଦୀ ମଧ୍ୟରେ ଅଭିଭୂତ କରିଛନ୍ତି । ଭଞ୍ଜ ଦୀନକୃଷ୍ଣ, ଗୋପାଳକୃଷ୍ଣ, ଅଭିମନ୍ୟୁ ଆଦି କବି ଙ୍କ ରଚନା ଓ ସ୍ୱର ମାଧୁର୍ଯ୍ୟ ମଣ୍ଡିତ ହୋଇଥିଲା ତାଙ୍କ ଦ୍ୱାରା । ଏହି ମଧ୍ୟଯୁଗୀୟ କବିତା ମାଧମ ରେ ବଂଗ ଦର୍ଶକଙ୍କୁ ଆକୃଷ୍ଟ କରିଥିଲେ । ସତେ ଯେପରି କଲିକତା ଠାରେ ଗୋପାଳ ଦାସ ଆମର ସାସ୍କୃତିକ ରାଜଦୂତ ଭାବେ କାର୍ଯ୍ୟ କରିଥିଲେ ।

ଯଦିଓ ତାଙ୍କର ଓଡିଆ ଲେଖା ମିଳିନାହିଁ କିନ୍ତୁ ତାଙ୍କ ସମ୍ବନ୍ଧରେ ମିଳୁଥିବା ସୂଚନା ଅନୁସାରେ ସେ ବଂଗ ଭାଷାରେ ଓଡିଆ ସଂଗୀତର ଛାନ୍ଦ ରେ ଅଭିନବ ସଂଗୀତ ସୃଷ୍ଟି କରିଯାଇଛନ୍ତି । ବଂଗର ବିଶିଷ୍ଟ କବି ଭରତଚନ୍ଦ୍ରଙ୍କ ବିଦ୍ୟାସୁନ୍ଦର ର ଲୋକପ୍ରିୟତା କୁ ଅନୁଭବ କରି, ଏଥି ସହିତ ଓଡିଆ ସଂଗୀତ ମିଶାଇ ଖାଣ୍ଟି ଓଡିଆ ନାଟ୍ୟକଳା ମାଧମରେ ଯାତ୍ରା ପରିବେଷଣ କରି ଏତେ ଲୋକପ୍ରିୟ ହୋଇ ପାରିଥିଲେ । ସାଂସ୍କୃତିକ ଚିନ୍ତାଧାରା କୌଣସି କାଳରେ ଏକ ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ ହୋଇ ରହିପାରେନା ।

ଶଚୀନ ସେନଗୁପ୍ତ ତାଙ୍କ ବଂଗଳାର ନାଟକ ଓ ନାଟ୍ୟଶାଳା ଗ୍ରନ୍ଥ ରେ "ବିଦ୍ୟାସୁନ୍ଦର' ନାଟକ କୁ ଋଷ ନାଟ୍ୟକାର ହେରାସିମ୍ ଲୋବେଦେଫ ଋଷ ଭାଷାରେ ଅନୁବାଦ କରି ନିଜକୁ ନେଇଗଲେ ବୋଲି ସୂଚନା ଦେଇଛନ୍ତି । ଯଦିଓ ଋଷ ଭାଷାରେ ଅନୁବାଦ ହୋଇଥିବା ବିଦ୍ୟାସୁନ୍ଦର ନାଟକ ର ନାଟ୍ୟକାରଙ୍କ ନାମ ଉଲ୍ଲେଖ ନାହିଁ । କିନ୍ତୁ ଗୋପାଳ ଉଡେ ଙ୍କ ପ୍ରସିଦ୍ଧ ବିଦ୍ୟାସୁନ୍ଦର ନାଟକ ଏହା ହୋଇପାରେ ବୋଲି ଅନୁମାନ

କରିବା ଅଯଥାର୍ଥ ନୁହେଁ ହେରସିମା ଲେବେଦେଫ୍ ୧୭୯୦ ମସିହା ରେ ଏଜରା ଷ୍ଟ୍ରିଟ୍ (ସେ କାଳର ନାମଥିଲା ଡୁମତାଲା) ଠାରେ ବିଦେଶୀ ନାଟକ ପ୍ରଦର୍ଶନ କରିବା ପାଇଁ ଏକ ରଂଗାଳୟ ପ୍ରତିଷ୍ଠା କରିଥିଲେ । ସେଠାରେ The Disguise ' Lord is the best doctor. ଆଦି ନାଟକ ଅଭିନୀତ ହୋଇଥିଲା । ସେ ମଧ୍ୟ କିଛି ଲୋକପ୍ରିୟ ଭାରତୀୟ ନାଟକ କୁ ଋଷ ଭାଷାରେ ଅନୁବାଦ କରି ନେଇ ଯାଇଥିଲେ । ବଂଗଳା ବିଦ୍ୟାସୁନ୍ଦର ନାଟକ କୁ ସେ ନେଇଥିବାର ସମ୍ବାଦ ମିଳେ ।

ମୋଟ ଉପରେ କୁହାଯାଇ ପାରେଯେ ଗୋପାଳ ଉଡେଙ୍କ ସମୟରେ ଓଡିଶାର ଯାତ୍ରା ଉଚ୍ଚମାନର ଥିଲା । ମଂଚ, ସଂଗୀତ, ଅଭିନୟ କଥାବସ୍ତୁ ପରିବେଷଣ କ୍ଷେତ୍ର ରେ ଓଡିଆ ଯାତ୍ରା ବଂଗଳା ଠାରୁ ଢେର ଆଗୁଆ ଥିଲା । ଗୋପାଳ ଦାସ ଓଡିଶାରୁ ବିଶେଷ କରି ତାଙ୍କ ଜନ୍ମଭୂମି ଯାଜପୁର ଅଂଚଳରୁ ଏ ନାଟ୍ୟ କଳା ରେ ପାରଦର୍ଶିତା ଲାଭ କରିଥିଲେ । ପେଟ ପୋଷିବା ପାଇଁ କଲିକତା ରେ ଛୋଟ ମୋଟ ଷ୍ଟେସନାରୀ ବେପାର କଲେ ମଧ୍ୟ ତାଙ୍କ ନାଟ୍ୟ ପ୍ରତିଭା, ସାଂସ୍କୃତିକ ରଚି - ବୋଧ, ଓଡିଆପ୍ରୀତି ତାଙ୍କୁ ବିଦ୍ୟାସୁନ୍ଦର ଯାତ୍ରାଦଳ ଗଢିବାକୁ ଅନୁପ୍ରେରିତ କରିଥିଲା । ମଧ୍ୟଯୁଗୀୟ ଓଡିଆ ସଂଗୀତ କୁ କଲିକତା ରେ ଲେକପ୍ରିୟ କରାଇ ପାରିଥିଲେ । ତାଙ୍କର କର୍ମକ୍ଷେତ୍ର ଓ ନାଟ୍ୟକର୍ମ ର ସ୍ଥାନ କଲିକତା ଥିବାରୁ ସେ ବଂଗଳା ଭାଷାରେ ଲେଖିଥିଲେ ତାଙ୍କ ଲେଖା ଓ ଯାତ୍ରା ରେ ଖାଣ୍ଟି ଓଡିଆ ଶୈଳୀ ଦର୍ଶକ ଙ୍କୁ ରଚିକର ବୋଧ ହୋଇବାରୁ ସେ ଯଥେଷ୍ଟ ଲୋକପ୍ରିୟ ଥିଲେ । ସତେ ଯେପରି ସେ ବଂଗ ଦେଶରେ ଓଡିଶାର ନାଟ୍ୟ ରାଜଦୂତ ପରି କାର୍ଯ୍ୟ କରି ଯାଇଛନ୍ତି । ତାଙ୍କ ସମ୍ବନ୍ଧରେ ଅଧିକ ଗବେଷଣା ହେଲେ ନାଟ୍ୟପ୍ରେମୀ ଉତ୍କଳୀୟ ପ୍ରେରଣା ଲାଭ କରନ୍ତେ । ସ୍ୱାମୀ ଶିବାନନ୍ଦ ତାଙ୍କ ପ୍ରବନ୍ଧ Folk Culture ରେ ଗୋପାଳ ଉଡେଙ୍କ ଜନ୍ମ ଯାଜପୁର ର କଣ୍ଟା ବଣିଆ ଗ୍ରାମରେ ବୋଲି ଲେଖିଛନ୍ତି । Especially the performance of Bidyasundar Pala as it was prior to the advent of Gopal Das of Kantabania, Jajpur who actually so to say, the father of Bengali Yatra.

ଏ ସମ୍ବନ୍ଧ ରେ ଅଧିକ ଗବେଷଣା ପ୍ରୟୋଜନ ।


୧. ଯୁଗେ ଯୁଗେ ନାଟ୍ୟ ସାହିତ୍ୟ - ବୀର କିଶୋର ଦାସ

୨. ଓଡିଆ ନାଟକର ଉଦଭବ ଓ ବିକାଶ - ଡଃ ରତ୍ନାକର ଚଇନି ।

୩. ଓଡିଆ ନାଟକର ବିକାଶ ଧାରା - ଡଃ ହେମନ୍ତ କୁମାର ଦାସ

୪. ଦେଶପ୍ରାଣ ବ୍ରଜସୁନ୍ଦର - ସଂ - ପଠାଣି ପଟ୍ଟନାୟକ

୫.	ଓଡିଆ ଆନ୍ଦୋଳନର ଇତିହାସ - ପଣ୍ଡିତ ବାଇକୋଳି ମହାପାତ୍ର
୬.	ଓଡିଶାର ଯାତ୍ରା - ରବି ନାରାୟଣ ମହାପାତ୍ର
୭.	ପୌରୁଷ - ଓଡିଶାର ପ୍ରାଚୀନ ତମ ଯାତ୍ରାଦଳ ପ୍ରବର୍ତ୍ତକ ନୀଳମଣି ମିଶ୍ର ୧୮ଶ ବର୍ଷ ୧୧ ଓ ୧୨ ସଂଖ୍ୟା
୭.	The Cultural Heritage of Jajpur, P- 390.



# ଅଭିମନ୍ୟୁ ସାମନ୍ତସିଂହାର

ଅଷ୍ଟାଦଶ ଶତାବ୍ଦୀରେ ସାରା ଭାରତରେ ଆଦରଣୀୟ ରାଧାକୃଷ୍ଣ ପ୍ରେମ ଝଙ୍କାର ପ୍ରାନ୍ତୀୟ ସାହିତ୍ୟରେ ନୂଆନୂଆ ଶବ୍ଦ କସରତରେ ଖାଲି ନୁହେଁ, ବରଂ ତାତ୍ତ୍ୱିକ ବ୍ୟାଖ୍ୟା ମଧ୍ୟରେ ପ୍ରତିଫଳିତ । ଓଡିଶା ମାଟିକୁ ଏ ଲହର ଅଷ୍ଟାଦଶ ଶତକର ବହୁ କବିମାନଙ୍କ ଦ୍ୱାରା ଆସିଥିଲେ ମଧ୍ୟ ଯାଜପୁର ମାଟିର ପରମ ସ୍ମରଣୀୟ ବୈଷ୍ଣବ ଅଭିମନ୍ୟୁ ସାମନ୍ତ ସିଂହାର ଏ ଧାରାର ମାଧୁର୍ଯ୍ୟ ମଣ୍ଡିତ ଶେଷ ସ୍ପର୍ଶ ଦେଇଥିଲେ ତାଙ୍କର ଅମରକାବ୍ୟ ବିଦଗ୍ଧ ଚିନ୍ତାମଣି ରେ ୮୪ ଏକର ପରିମିତ ଜମି ରେ ସେ ବାଲିଆଠାରେ ଗୁପ୍ତ ବୃନ୍ଦାବନ ର ପରିକଳ୍ପନା କରିବା ସହିତ ପରମ ଆରାଧ୍ୟ ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତିର ପୂଜାର୍ଚ୍ଚନା ବ୍ୟବସ୍ଥା କରି ବୈଷ୍ଣବ ସଂସ୍କୃତିରେ ଯାଜପୁରକୁ ଏକ ମର୍ଯ୍ୟାଦା ପୂର୍ଣ୍ଣ ଆସନ ଦେଇଯାଇଛନ୍ତି । ଯାଜପୁର ତାର ପ୍ରାଚୀନ ସଂସ୍କୃତି , ଜ୍ଞାନ ବିଜ୍ଞାନ ଓ ଧାର୍ମିକ ଉଦାରତା ପାଇଁ ପ୍ରସିଦ୍ଧ । ସେ ପ୍ରସିଦ୍ଧପୀଠକୁ ଅଧିକ ମହିମା ମଣ୍ଡିତ କରିବାରେ ବିଦଗ୍ଧ କବି ଅଭିମନ୍ୟୁ ଙ୍କ ଅବଦାନ ସ୍ମରଣୀୟ ।

କବି ଅଭିମନ୍ୟୁଙ୍କ ଜନ୍ମସ୍ଥାନ ଅବିଭକ୍ତ କଟକ ଜିଲ୍ଲାର ଯାଜପୁର ସବଡିଭିଜନରେ ଜନ୍ମସ୍ଥାନ "ଗୋଳକୁଣ୍ଡା" ବାଲିଆ ଜମିଦାରୀର ଏକ ଗ୍ରାମ । ତାଙ୍କ ପୂର୍ବପୁରୁଷମାନେ ମଧ୍ୟଭାରତର ଜୟପୁର ଅନ୍ତର୍ଗତ ଭାବନଗରରୁ ଓଡିଶାକୁ ଆସିଥିଲେ । ୧୭୫୭ ଖ୍ରୀଷ୍ଟାବ୍ଦରେ ମାଘ ସପ୍ତମୀ ତିଥିରେ ପ୍ରତ୍ୟୁଷକାଳରେ ଭୂମିଷ୍ଠ ହୋଇଥିଲେ ଯୋଗଜନ୍ମା ଅଭିମନ୍ୟୁ । ତାଙ୍କର ତିରୋଧାନ ଦିବସ ହେଲା । ୧୮୦୬ ମସିହା ଜ୍ୟେଷ୍ଠ କୃଷ୍ଣ ସପ୍ତମୀ । ଯଦି ଓ କବିଙ୍କ ଜନ୍ମ ସମୟକୁ ନେଇ ଭିନ୍ନ ମତ ପୋଷଣ ଆଲୋଚକମାନେ କରନ୍ତି କିନ୍ତୁ ତାହା ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଅଭିମନ୍ୟୁଙ୍କ ଜନ୍ମ ସମୟ ନିରୁପଣ ସମ୍ବନ୍ଧରେ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଆଦିଙ୍କ ସମୟ ୧୭୮୭ ବଦଳରେ ଜନ୍ମ ୧୭୬୮- ୧୭୭୦ ମଧ୍ୟରେ ନିରୁପଣ କରିବାକୁ ଚେଷ୍ଟା କରିଛନ୍ତି । ଡଃ: ବଂଶୀଧର ମହାନ୍ତି ପ୍ରେମ ଚିନ୍ତାମଣି । ବର୍ଣ୍ଣନା ଆଧାରରେ କବିଙ୍କ ଜନ୍ମ ୧୭୫୯ ରେ ନିଶ୍ଚିତ ବୋଲି ଅଭ୍ରାନ୍ତ ଯୁକ୍ତି କରିଛନ୍ତି । ତାହା ଗବେଷଣାର ବିଷୟ । ପ୍ରାୟ ବହୁ ଆଲୋଚକ ଏକ-ମତ ଯେ ତାଙ୍କ ପୂର୍ବ ପୁରୁଷ ଓଡିଶା ବାହାରର କ୍ଷତ୍ରିୟ ପରିବାରର ଲୋକ ସେମାନେ ଭୋଇବଂଶ

ରାଜାଙ୍କଠାରୁ ବରୁହଁ । ପ୍ରଗଣାର ବାଲିଆ ଜମିଦାରୀ ପ୍ରାପ୍ତ ହୋଇଥିଲେ । ସାମନ୍ତ ସିଂହାର ହେଉଛି ତାଙ୍କର କୌଣସି ପୂର୍ବ ପୁରୁଷଙ୍କ ଅଦ୍ଭୁତ କର୍ମର ସ୍ମୃତି ବିଜଡିତ ରାଜାଦତ୍ତ ଉପାଧି "ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଭାଷାରେ-ତାଙ୍କର ଆଦି ଜନ୍ମସ୍ଥାନ ଜୟପୁର ଅନ୍ତର୍ଗତ ଭାବନଗର, କେନ୍ଦ୍ରପଡା କ୍ଷେତ୍ରୀୟ ବଂଶ ଯୋଧପୁରରୁ ଆସିଥିଲେ । ସାମନ୍ତ ସିଂହାର ବଂଶ ସେ ବଂଶର ଅନେକ ପରବର୍ତ୍ତୀ ବୋଲି ମନେହୁଏ । ତାଙ୍କ ପିତାମହ ଓ ପ୍ରପିତ । ମହନାମ ଶୁଣିଲେ ପାଠକମାନେ ବୁଝି ପାରିବେ ସେମାନେ ପଶ୍ଚିମରୁ ନବାଗତ । ସେ ସବୁ ନାମ ଉତ୍କଳରେ ପ୍ରଚଳିତ ନୁହେଁ । ଦ୍ୱିତୀୟତଃ ଏ ବଂଶ ଖୋର୍ଦ୍ଧାର ଭୋଇବଂଶର ରାଜାଙ୍କ ଠାରୁ ବରୁଆଁ ପ୍ରଗଣା ଅନ୍ତର୍ଗତ ବାଲିଆ ଜମିଦାରୀ ପ୍ରାପ୍ତ ହୋଇଥିଲେ । ଉପାଧି କାହାଠାରୁ ପାଇଥିଲେ ତାହା ନିଶ୍ଚିତଭାବେ ଜଣାଯାଏ ନାହିଁ । କଥିତ ଅଛି ସେତେବେଳେ ସେ ଅଞ୍ଚଳରେ ଗୁହାଳି, ବରପଦା, ରତଲାଙ୍ଗ, କମଳପୁର ହାତୀମଣ୍ଡା ଆଦି ନାମରେ ସାତଟପା ବା ସାତଉଆସ ଥିଲା । ଏହି ସାତଟପାରେ ରଣସିଂହ ମହାପାତ୍ର ଦକ୍ଷିଣରାୟ ମହାପାତ୍ର ପ୍ରଭୃତି ବିଭିନ୍ନ ଉପାଧିଧାରୀ ସାମନ୍ତମାନେ ପ୍ରଭୃତ୍ୱ କରୁଥିଲେ । ଅଭିମନ୍ୟୁଙ୍କ ପୂର୍ବ ପୁରୁଷ ଏହି ସାମନ୍ତଙ୍କ ମଧ୍ୟରେ ଗଣ୍ୟ ହୋଇନଥିଲେ ହେଁ ଏକ ସମୟରେ ଏହି ବଂଶର ଜଣେ କେହି ଅପର ସାତସାମନ୍ତଙ୍କୁ ଗୋଟିଏ ମହାବିପଦରୁ ବୃଦ୍ଧି ବଳରେ ରକ୍ଷା କରିଥିଲେ । ଏଥିରେ ସାମନ୍ତମାନେ ସନ୍ତୁଷ୍ଟ ହୋଇ "ସାମନ୍ତସିଂହାର" ଅର୍ଥାତ ସାମନ୍ତ ଭୂଷଣ ଉପାଧି ପ୍ରଦାନ କଲେ । ସେହି ଉପାଧି ରାଜଦତ୍ତ ଉପାଧି ପ୍ରାୟ ସମ୍ମାନର ସହିତ ବଂଶ ପରଂପରା କ୍ରମେ ଚଳିଆସୁଅଛି ।  ସେ ଯାହାହେଉ ସାମନ୍ତ ସିଂହାର ଙ୍କ ଉପାଧି ଓ ଅଭିମନ୍ୟୁଙ୍କ ବଂଶଧର ମାନେ ବାଲିଆ ଜେନା ଭାବେ ସୁପରିଚିତ। କବିଙ୍କ ବଂଶାବଳୀ ।ବନ୍ଦକୀ ସାମନ୍ତସିଂହାର : ଖୋସାଲୀ ସାମନ୍ତ ସିଂହାର - ଇନ୍ଦ୍ରଜିତ୍ ସାମନ୍ତ ସିଂହାର ଅଭିମନ୍ୟୁ ସାମନ୍ତ ସିଂହାର+ସୁରଥ ଛୋଟରାୟ । ତାଙ୍କ ପୂର୍ବ ପୁରଷମାନେ ବୀର ଓ ଶାସ୍ତ୍ରଜ୍ଞ । ଅଭିମନ୍ୟୁଙ୍କ ପିତା ଇନ୍ଦ୍ରଜିତ୍ ସାମନ୍ତ ସିଂହାର ଜଣେ ବିଦ୍ୱାନ, ରସିକ ଧର୍ମପ୍ରାଣ, ବୀରଭାବେ ଖ୍ୟାତି ଅର୍ଜନ କରିଥିଲେ । ଇନ୍ଦ୍ରଜିତ୍‌ଙ୍କର ସାତରାଣୀ ଥିଲେ ସେମାନେ ସନ୍ତାନବତୀ ନହେବାରୁ ତୁଳସୀ ଦେବୀଙ୍କୁ ସେ ଅଷ୍ଟମ ପତ୍ନୀ ଭାବେ ଗ୍ରହଣ କଲେ । ତୁଳସୀ ଦେବୀ ଥିଲେ ବରୁଆଁ ପ୍ରଗଣାର ଉଦୟପୁର ଗ୍ରାମର ସୁବିଦିତ ପଟ୍ଟନାୟକ ପରିବାରର କନ୍ୟା । ସେ ଯେପରି ବିଦୂଷୀ ସେହିପରି ଧର୍ମପ୍ରାଣା ମହିଳା । ଏ ଉଦୟପୁର ଗାଁଟି ତୁଳସୀ ଦେବୀଙ୍କ ପିତା ଉଦୟନାଥ ପଟ୍ଟନାୟକଙ୍କ ଦ୍ୱାରା ସ୍ଥାପିତ ହୋଇଛି ବୋଲି ଓ ତୁଳସୀ ଦେବୀ ଏକ ଦୈବୀବଳ ସଂପନ୍ନା କନ୍ୟା ବୋଲି କିମ୍ବଦନ୍ତୀ କହେ । ଇନ୍ଦ୍ରଜିତ୍ ସାମନ୍ତ ସିଂହାର ପୁତ୍ର ପ୍ରାପ୍ତି ନିମନ୍ତେ ବହୁ ସୁପଣ୍ଡିତ ସାଧୁ ପୁରୁଷଙ୍କ ପରାମର୍ଶରେ ପୁତ୍ରେଷ୍ଟି

ଯଜ୍ଞ କରିଥିଲେ । କେତେକ ଆଲୋଚକ ଏହି ପରାମର୍ଶଦାତା ହେଉଛନ୍ତି ଇନ୍ଦ୍ରଜିତ୍‌ଙ୍କ ବଂଧୁ ଓ ଗୁରୁ କବିସୂର୍ଯ୍ୟ ବ୍ରହ୍ମା । ସେ ଗୋଟିଏ ଅଷ୍ଟାହ ଯଜ୍ଞ କରିଥିଲେ । ଏହି ଯଜ୍ଞକୁଣ୍ଡ ଅଷ୍ଟମୁଖୀ ଥିଲା ଓ ଯଜ୍ଞରେ ଅଷ୍ଟ ସହସ୍ର ଘୃତାହୂତି ଦିଆଯାଇଥିଲା । ସେହି ଯଜ୍ଞର ପୂର୍ଣ୍ଣାହୁତି ପରେ ତାଙ୍କ କନିଷ୍ଠାରାଣୀ ତୁଳସୀ ଦେବୀ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ସ୍ୱପ୍ନଟି ହେଉଛି ଜଣେ ବୈଷ୍ଣବ ସାଧୁ ତୁଳସୀ ଦେବୀଙ୍କ ହାତରେ ତୁଳସୀମାଳା ଓ ଚନ୍ଦନ କାଠଦେଇ ହଠାତ୍ ଅନ୍ତର୍ହିତ ହେଲେ ଓ ପରେ ତୁଳସୀ ଦେବୀଙ୍କ ଗର୍ଭରୁ ଅଭିମନ୍ୟୁ ଜନ୍ମନେଲେ । ତାର ପ୍ରତିଫଳନ ତାଙ୍କ ବାଲ୍ୟ ଅବସ୍ଥାରେ ପ୍ରକାଶିତ । ମାତ୍ର ୧୪ ବର୍ଷ ବୟସରେ ଅର୍ଥାତ ୧୭୭୧ ମସିହାରେ ଅଭିମନ୍ୟୁ କେନ୍ଦ୍ରାପଡାର ବିଖ୍ୟାତ ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କ ପିତୃବ୍ୟ ସଦାଶିବ ଜେନାଙ୍କ ଭଗିନୀ (ଗୋବିନ୍ଦ ଜେନାଙ୍କ କନ୍ୟା) ବିମଳା ବିବାହ କଲେ । ୧୭୭୬ ରେ ତାଙ୍କର ପିତୃବିୟୋଗ ଘଟିଲା । ଅଭିମନ୍ୟୁଙ୍କୁ ମାତ୍ର ୧୯ ବର୍ଷ ବୟସରେ ପିତୃହିନ ହୋଇ ବିରାଟ ଜମିଦାରୀର ରକ୍ଷଣା ବେକ୍ଷଣ ଦାୟୀତ୍ୱ ଗ୍ରହଣ କରିଥିଲେ । ମାତ୍ର ଚିରବୈରାଗୀ ଅଭିମନ୍ୟୁ ଏହି ବିଷୟ ବାସନାକୁ ପରିତ୍ୟାଗ କରି ୨୨ ବର୍ଷ ବୟସରେ ବୈଷ୍ଣବ ଧର୍ମରେ ଦିକ୍ଷୀତ ହେଲେ ଓ ତାଙ୍କ ସାନଭାଇ ସୁରଥ ଛୋଟରାୟ ବସ୍ତୁତଃ ଜମିଦାରୀ ପରିଚାଳନା କରୁଥିଲେ । ସଂସାର ଜଂଜାଳରୁ ସେ ମୁକ୍ତହୋଇ ଅଭିମନ୍ୟୁ ନିଜର ଇଷ୍ଟଦେବ ରାଧାମୋହନଙ୍କ ପୂଜାର୍ଚ୍ଚନା, ଆରାଧନା, କୃଷ୍ଣାନୁରାଗ ଓ ଲୀଳାର ଆଲୋଚନା ଓ ରଚନା ରେ ନିମଗ୍ନ ହୋଇଥିଲେ । ବିଶେଷ କରି ବାଲ୍ୟ ଅବସ୍ଥାରେ ବୈଷ୍ଣବ କବି ସାଧୂଚରଣ ଦାସ ଓରଫ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ପରି ଗୁରୁ ଲାଭ କରି ଅଭିମନ୍ୟୁଙ୍କ ପ୍ରତିଭା ଉତ୍ତରୋତ୍ତର ବିକଶିତ ହୋଇଥିଲା । ବାଲ୍ୟ ଅବସ୍ଥାରୁ ସଂସ୍କୃତରେ କୋଷଗ୍ରନ୍ଥ ବ୍ୟାକରଣ, ଅଳଙ୍କାର ଗ୍ରନ୍ଥ ଓ ଉଜ୍ଜ୍ୱାୟ କାବ୍ୟାବଳୀକୁ ଉତ୍ତମ ରୂପେ ଆୟତ୍ତ କରିପାରିଥିଲେ । ଭାଗବତ ଠାରୁ ଆରମ୍ଭ କରି ବହୁ ବୈଷ୍ଣବ ପୁରାଣ, ବେଦ ଉପନିଷଦ, ଗୌଡୀୟ ଷଡ ଗୋସ୍ୱାମୀଙ୍କ ପ୍ରଣୀତ ଗ୍ରନ୍ଥମାନ ଜୟଦେବ, ବିଲ୍ୱମଂଗଳ, ବିଦ୍ୟାପତୀ, ଚଣ୍ଡିଦାସ ପ୍ରମୁଖ ଅନେକ କବିମାନଙ୍କ ରଚନାବଳୀରେ ପାରଦର୍ଶିତା ଲାଭ କରିଥିଲେ । ବଂଗଳା, ହିନ୍ଦୀ, ମରାଠୀ, ପାଂର୍ସି ଭାଷା ସହିତ ସମରକଳା ଓ ସୂକ୍ଷ୍ମ କଳାରେ ମଧ ଅସାଧାରଣ ଜ୍ଞାନ ଥିଲା । କିଶୋର ବୟସରେ ସେ ତାଙ୍କ ମାମୁଁ ଘର ଗାଁର ବିଶିଷ୍ଟ ସଂସ୍କୃତ ପଣ୍ଡିତ ଟଂକଧର ନାୟକଙ୍କ ସହାୟତାରେ କାଳିଦାସ, ମାଘ, ଭାରବୀ ଓ ନୈଷଧାଦି ବହୁ ସଂସ୍କୃତ ଗ୍ରନ୍ଥ ପାଠ କରିବାର ସୁଯୋଗ ପାଇଥିଲେ ଓ ବହୁ ତାତ୍ତ୍ୱିକ ଆଲୋଚନା କରିଥିଲେ, ଉଚ୍ଚମାନର କାବ୍ୟରଚନା କରିଥିଲେ । ବାଲ୍ୟ ଅବସ୍ଥାରେ ବାଘଗୀତ ଚଢେଇଗୀତ, ବୋଲେ ହୁଁ ଗୋ, ଫୁଲ ବଉଳ ବେଣୀ ଲେଖିଥିଲେ । ବର୍ଣ୍ଣନା ଅନାବିଳ

ଓ ସମ୍ଭାବନା ପୂର୍ଣ୍ଣଥିଲା । ଏ ଗୀତର ଭକ୍ତି ପ୍ରବଣତା ଓ ଶବ୍ଦ ଚାତୁରୀ ବହୁ ଲୋକଙ୍କୁ ଆକୃଷ୍ଟ କରିଥିଲା ।

କର୍ମଙ୍ଗା ଗଛର ଛାଇଗୋ
ମୋର ହୁଁ ଗୋ
କରମ ଯାହାର ସଫଳ ହୋଇବ
କୃଷ୍ଣଙ୍କୁ ଲଭିବ ସେହି ଗୋ
ମୋର ହୁଁ ଗୋ

ଏ ପଦଗୁଡିକ ଗୋଟିଏ ଶିଶୁ ଭାବନାର କେବଳ ଆଲେଖ୍ୟ ନୁହେଁ ବରଂ ଏହା ମହାନ କବିଙ୍କ ସମ୍ଭାବନା ପୂର୍ଣ୍ଣ ରୂପରେଖ । ଗୌଡୀୟ ବୈଷ୍ଣବ ଧାରାପ୍ରତି ତାଙ୍କର ଅଗାଧ ବିଶ୍ୱାସ । ବିଶେଷ କରି କବିସୂର୍ଯ୍ୟ ବ୍ରହ୍ମ । ଯେ କି ଜଣେ ନୈଷ୍ଠିକ ଗୌଡୀୟ ବୈଷ୍ଣବ (ଗଦାଧର ଶାଖାଭୂକ୍ତ) ତାଙ୍କ ଭକ୍ତି ଧର୍ମର ପ୍ରଭାବରେ ଅଭିମନ୍ୟୁ ପ୍ରଭାବିତ । "ଶ୍ରୀମଦ୍ ଶ୍ରୀ ସଦାଶିବ କବିସୂର୍ଯ୍ୟ ବ୍ରହ୍ମା କୃପାକଲେ ପ୍ରାପତି କବିତ୍ୱ ମାର୍ଯ୍ୟ ସୀମା"। ପଦରେ ସେ ଗୁରୁଙ୍କ ଋଣ ସ୍ୱୀକାର କରିଛନ୍ତି । ୧୭୭୯ ପର୍ଯ୍ୟନ୍ତ ଉଭୟଙ୍କ ମଧ୍ୟରେ ସମ୍ପର୍କ ଭଲଥିଲା । ଅଭିମନ୍ୟୁ ଗୁରୁ ବ୍ରହ୍ମାଙ୍କ ଠାରୁ ବ୍ରଜପନ୍ଥୀ ବୈଷ୍ଣବତତ୍ତ୍ୱ ଆହରଣ କରିଥିଲେ କିନ୍ତୁ ଜଣେ ବୈଷ୍ଣବ ହୋଇ ଖୋର୍ଦ୍ଧା ରାଜା ବୀର କିଶୋର ଦେବଙ୍କଠାରୁ କବିସୂର୍ଯ୍ୟ ଉପାଧି ଗ୍ରହଣରେ ଓ ବୈଷ୍ଣବ ହୋଇ ତାଙ୍କ ପୂର୍ବାଶ୍ରମ (ବ୍ରାହ୍ମଣ) ର ପରିଚୟ କାବ୍ୟ ଆଦିରେ ଦେବା କଥାକୁ ବୈଷ୍ଣବ ସଂପ୍ରଦାୟ ମାନେ ସହଜ ଭାବେ ଗ୍ରହଣ କରିପାରୁନଥିଲେ । ଫଳରେ ଅଭିମନ୍ୟୁଙ୍କ ସହ ଏହି ତତ୍ତ୍ୱ ଓ ନୀତି ଗତ ଅମେଳ ହେବାରୁ ଏହି ବୈଷ୍ଣବ ଧର୍ମ ପ୍ରଚାରକ କବିସୂର୍ଯ୍ୟ ବ୍ରହ୍ମା ବାଲିଆରୁ ପଳାୟନ କରି ଦୀକ୍ଷିତ ପଡା ମଠରେ ଅବଶିଷ୍ଟ ଜୀବନ କଟାଇଥିଲେ । କିନ୍ତୁ ନିଷ୍ପାପର ବୈଷ୍ଣବ ଭାବେ ଅଭିମନ୍ୟୁ ନିଜ ସାଧନାରେ ଅଟଳ ହୋଇ ରହିଥିଲେ ।

ଅଭିମନ୍ୟୁଙ୍କ ବିଦଗଧ ଚିନ୍ତାମଣିରେ ସମସ୍ତ ପ୍ରକାର ପାଣ୍ଡିତ୍ୟ ଓ ଶବ୍ଦର ଯାଦୁଖେଳ, ଛନ୍ଦ, ଅଳଙ୍କାରର ଆଦିର ବୈଶିଷ୍ଟ୍ୟ ସତ୍ତ୍ୱେ ଏହାର କରୁଣ ରସ ପାଠକଙ୍କୁ ଅଭିଭୂତ କରିଦିଏ । ଏହା ତାଙ୍କର ପରିପକ୍ୱ ବୟସରେ ରଚନା ଯେଉଁଥିରେ କବିଙ୍କ ବ୍ୟକ୍ତିଗତ ଜୀବନର କରୁଣ ରସର ଅପୁରନ୍ତ ନିର୍ଝର ଦେଖିବାକୁ ମିଳେ । ତାଙ୍କ ଧର୍ମପତ୍ନୀ ବିମଳା ଦେବୀଙ୍କ ମୃତ୍ୟୁ ଯେପରି କିମ୍ବଦନ୍ତୀରେ ବର୍ଣ୍ଣିତ ହୋଇଛି ତାହା କବିଙ୍କୁ ଏତାଦୃଶ ଲେଖା ସୃଷ୍ଟି କରିବାକୁ ନିଷ୍ଚିତ ଅନୁପ୍ରେରିତ କରିଥିବ । ପତି ପ୍ରାଣଗତା ବିମଳା ଦେବୀଙ୍କ

ଉତ୍ତର ଥିଲା ମୁଁ ଯଦି ପ୍ରକୃତରେ ତୁମର ଧର୍ମପତ୍ନୀ ହୋଇଥିବି, ତେବେ ମୁଁ ନିଶ୍ଚିତ ମରିଯିବି । କବିଙ୍କର ସହଜ ପ୍ରଶ୍ନର ଏ ଜଟିଳ ଉତ୍ତର ଥିଲା କବିଙ୍କ ପ୍ରଶ୍ନଥିଲା ମୁଁ ଯଦି ମରିଯାଏ ତୁମେ ମଧ କଣ ମରିଯିବ ? ଦିନେ ରସିକ କବି ନିଜ ପରିକଳ୍ପିତ କୌତୁକ - କ୍ରମରେ ନିଜର ମୁଦି ଓ କଟାରୀ ଭଣ୍ଡାରୀ ହାତରେ ପଠାଇ ଦେଲେ । ସାଆନ୍ତେ ବଣକୁ ଯାଇଥିଲେ ବଣରେ ବାଘ ଖାଇଗଲା । ସେ ସମ୍ବାଦ ବିମଳା ଦେବୀ ଶ୍ରବଣ କରି ଦୁଆର ବନ୍ଧକୁ ଧରି ଠିଆ ହୋଇ ଥିବା ବେଳେ ତାଙ୍କ ପ୍ରାଣବାୟୁ ଚାଲିଗଲା । କବିଙ୍କର ଏହି ଅପରିଣାମ ଦର୍ଶିତା ଯୋଗୁ ନିଜର ପ୍ରାଣପ୍ରିୟାଙ୍କୁ ହରାଇ ପ୍ରାୟଶ୍ଚିତ ସ୍ୱରୁପ । ଆତ୍ମହତ୍ୟା କରିବାରୁ ନିବୃତ୍ତ ରହି ସାରା ଜୀବନ ରାଧାମାଧବଙ୍କ ସେବା ଆରାଧନାରେ କଟାଇ ଦେବାକୁ ନିଷ୍ପତ୍ତି ନେଲେ । ବିଦଗଧ ଚନ୍ତାମଣି ସେହି ମହିମାମୟ ନିଷ୍ପତ୍ତିର ଏକ ଅକ୍ଷର କୋଣାର୍କ । ପ୍ରଥମତଃ ୧୯ ବର୍ଷ ବୟସରେ ପିତୃ ବିୟୋଗ ଓ ପରେ ପ୍ରାଣପ୍ରିୟା ପତ୍ନୀଙ୍କ ଅକାଳ ବିୟୋଗ ଆଦି ଘଟଣା ସହ ସାରାଜୀବନ ରାଧାମାଧବଙ୍କ ସେବା କରିବାର ନିଷ୍ପତ୍ତିରୁ କବି ଅନ୍ତରବେଦନା ବିଧୁରିତ ହୋଇଥିଲା ଓ ସେହି କରୁଣ ରସ ଜର୍ଜରିତ ଅନ୍ତରରୁ ଆତ୍ମପ୍ରକାଶ କରିଥିଲା । ଶ୍ରେଷ୍ଠ ରଚନା ବିଦଗଧ ବିରୋଧ ଚିନ୍ତାମଣି ପରି ଏବ ଅସଂପୂର୍ଣ୍ଣ କାବ୍ୟ, ଭଗ୍ନ କୋଣାର୍କ ପରି ବିଶ୍ୱବିସ୍ମୟ । ପତ୍ନୀ ବିୟୋଗ ଜନିତ କିମ୍ବଦନ୍ତୀକୁ ଯେଉଁ ଆଲୋଚକମାନେ ଅସ୍ୱୀକାର କରନ୍ତି ସେମାନଙ୍କ ମତରେ ବିଦଗଧ ଚିନ୍ତାମଣି କବିଙ୍କର ପୌଢ ଅବସ୍ଥାର ସୃଷ୍ଟି, ଜମିଦାର ଅଭିମନ୍ୟୁଙ୍କ ଆର୍ଥିକ ସ୍ୱଚ୍ଛଳତା ତାଙ୍କୁ ଭୋଗ ବିଳାସୀ କରି ନଥିଲା ବରଂ ଜଣେ ପରମ ବୈଷ୍ଣବ ଭାବେ ନିଷ୍ଠାପର ଭାବେ ଜୀବନ ଯାପନ କରିବାକୁ ପ୍ରେରଣା ଦେଇଥିଲା , ନିଜ ଗ୍ରାମ ବାଲିଆକୁ ସେ ଗୁପ୍ତ ବୃନ୍ଦାବନ ଭାବେ ଗଢିଥିଲେ । ବୃନ୍ଦାବନ ପରି କୁଞ୍ଜବନ, ସ୍ୱାନକୁଣ୍ଡ ରାଧାକୃଷ୍ଣ ମନ୍ଦିର ଆଦି ନିର୍ମାଣ କରି ବୃନ୍ଦାବନର ଏକ କ୍ଷୁଦ୍ର ସଂସ୍କରଣ ରୂପେ ଗଢିଯାଇଥିଲେ ନିଜ ଅଂଚଳକୁ ।

ବାଲ୍ୟ ବୟସରୁ ସେ ଯେଉଁ ବାଘଗୀତ । ଚଢେଇଗୀତ, ବୋଲେ ହୁଁ ଗୀତ ଲେଖି ଯାଇଥିଲେ ସେଥିରୁ କବିମାନସର ସାରସ୍ୱତ ଭିତିଭୂମିର ସୂଚନା ମିଳେ । ମଝିରେ ମଝିରେ ସେ ଅନେକ ଜଣାଣ, ଭଜନ ଓ ଚଉପଦୀମାନେ ଲେଖିଯାଇଛନ୍ତି । ସବୁଥିରେ ରାଧାକୃଷ୍ଣଙ୍କ ପ୍ରତି ତାଙ୍କ ସମର୍ପଣ ଭାବ ସ୍ପଷ୍ଟ ।

ତାଙ୍କ ରଚିତ ବିବିଧ କାବ୍ୟ ଗୁଡିକ ହେଲା ସେ ସୁଲକ୍ଷଣା, ବିଦଗଧ ଚିନ୍ତାମଣି, ପ୍ରେମାକଳା , ରସବତୀ । ଅଭିମନ୍ୟୁଙ୍କ କାବ୍ୟ ୪ଟିର ଗୋଟିଏ କୌତୂହଳପୂର୍ଣ୍ଣ ସଂପର୍କ ଦେଖାଯାଏ । ସୁଲକ୍ଷଣା - ୧୬ ଛାନ୍ଦ, ରସବତୀ - ୩୨ ଛାନ୍ଦ, ପ୍ରେମକଳା - ୬୪ ଛାନ୍ଦ ଓ ବିଦଗ୍ଧ ଚିନ୍ତାମଣି - ୯୬ ଛାନ୍ଦ । ସବୁ କାବ୍ୟର ଛାନ୍ଦ ଗୁଡିକ ୧୬ ସଂଖ୍ୟାର

ଗୁଣିତକ। ଶ୍ରୀକୃଷ୍ଣ ୧୬ କଳା । ହରେ କୃଷ୍ଣ ମନ୍ତ୍ରବି ଷୋଳଅକ୍ଷର ବିଶିଷ୍ଟ ଭଗବାନଙ୍କୁ ୧୬ଶ ଉପଚାରରେ ପୂଜା କରାଯାଏ । ତେଣୁ ପରମ ବୈଷ୍ଣବ ଅଭିମନ୍ୟୁ ଏହି ୧୬ ସଂଖ୍ୟା ଉପରେ ଗୁରୁତ୍ୱ ଦେବା ସ୍ୱାଭାବିକ ମନେହୁଏ । ପ୍ରେମ କଳା ଅଭିମନ୍ୟୁଙ୍କ ଏକ ଭଞ୍ଜ ଶୈଳୀୟ କାଞ୍ଚନୀକ କାବ୍ୟ । ଏ ବାକ୍ୟରେ କବି ନିଜ ପରିଚୟ ଦେଇଛନ୍ତି ।

ଜମ୍ବୁଦ୍ୱୀପେ ଭାରତଖଣ୍ଡେ ଏ ସାର ମହୀ
ମହୋଦଧି ଯାଜନଗ୍ରେ ମଧ୍ୟରମ୍ୟ ତହିଁ
ସୁବେହାର ସ୍ଥାନ ଯେଣୁ ଥିବାର ଏ ଦେଶ
ଗୋଳକୁଣ୍ଡ ନାମେ ଗ୍ରାମ ତହିଁରେ ପ୍ରକାଶ
ଇନ୍ଦ୍ରଜିତ୍ ସାମନ୍ତ ସିଂହାର ନାମ ଧର
ତାଙ୍କ ଜ୍ୟେଷ୍ଠପୁତ୍ର ଅଭିମନ୍ୟୁ ନାମ ମୋର
ଆତ୍ମର ରୀତି ରେ ତ ସାମନ୍ତ ସିଂହାର

ଏ କାବ୍ୟରେ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ ଓ ନୈଷଧ ବାକ୍ୟରେ ପ୍ରଭାବ ଅନୁଭୂତ । ସେହିପରି ରସବତୀ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ ଅନୁସରଣରେ ରଚିତ ହେଲେ ହେ କବିଙ୍କର ବହୁ ଶାସ୍ତ୍ର ଦର୍ଶିତା ଓ ନାଟ୍ୟକଳା ସମ୍ବନ୍ଧରେ ବହୁ ସୂଚନା ଦିଏ । ସେହିପରି ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ଓ ଦୁର୍ଯ୍ୟୋଧନଙ୍କ କନ୍ୟା ସୁଲକ୍ଷଣା ର ପ୍ରଣୟ ଓ ପରିଣୟ ଉପରେ ଆଧାରିତ କାବ୍ୟ ସୁଲକ୍ଷଣା ଏହା ଭଞ୍ଜୀୟ ଶୈଳୀରେ ରଚିତ ଓ ପ୍ରଭାବିତ । ବିଦଗଧ ଚିନ୍ତାମଣି ୯୬ ଛାନ୍ଦ ବିଶିଷ୍ଟ ଅଭିମନ୍ୟୁଙ୍କ ଶ୍ରେଷ୍ଠ କାବ୍ୟ । ଏଥିରେ ଅପ୍ରାକୃତ ପ୍ରେମ ମୂର୍ତ୍ତି ରାଧାହରିଙ୍କ ଜନ୍ମ, ବାଲ୍ୟ, କୈଶୋର ଲୀଳା ସହିତ ଯାବତୀୟ ବିରହ ଓ ମିଳନର ଚିତ୍ର ପ୍ରଦତ୍ତ ପ୍ରାଚୀନ ଯୁଗଠାରୁ ଏଯାବତ ସମସ୍ତ ସମାଲୋଚକ ଏହି କାବ୍ୟକୁ ଶ୍ରେଷ୍ଠ କାବ୍ୟର ମାନ୍ୟତା ଦେଇଛନ୍ତି । ସମସ୍ତେ ସମସ୍ୱରରେ କହିଛନ୍ତି ଯେ ରାଶି ରଶି କାବ୍ୟ ଗ୍ରନ୍ଥ ମଧରେ ଉପେନ୍ଦ୍ର ଭଞ୍ଜ ଯେଉଁ ଆଳଙ୍କାରିକ, କାବ୍ୟିକ ଓ ତାତ୍ତ୍ୱିକ ପାଣ୍ଡିତ୍ୟ ପ୍ରଦର୍ଶନ କରିଛନ୍ତି । ଅଭିମନ୍ୟୁ ଏହି ଖଣ୍ଡିକ କାବ୍ୟରେ ସେ ସମସ୍ତର ସମାବେଶ କରିବାକୁ ସମର୍ଥ ହୋଇଛନ୍ତି । ମୃତ୍ୟୁଞ୍ଜୟ ରଥଙ୍କ ମତରେ

ଉପମା ଭଞ୍ଜ ବୀରସ୍ୟ ତ ସୈବ ଚାର୍ଥ ଗୌରବମ
କଲ୍ଲୋଳେ ପଦ ଲାଳିତ୍ୟ ସାନ୍ତି ଚିନ୍ତାମଣୌ ତ୍ରୟଃ

ଅଭିମନ୍ୟୁଙ୍କ ଶ୍ରେଷ୍ଠ କୃତି ବିଦଗଧ ଚିନ୍ତାମଣିର ୨/୪ ଟି ପଦ ଏଠାରେ ଉଦ୍ଧୃତ ଓ ସନ୍ନିବେସିତ ନ ହେଲେ ବିଦଗଧ କବିଙ୍କ ପରିଚୟ ଅପୂର୍ଣ୍ଣ ହୋଇ ରହିଯିବ ।

ପାଠକମାନଙ୍କୁ ସର୍ବୋଚ୍ଚ ସମ୍ମାନ ଦେବାରେ କବିଙ୍କର ଆନ୍ତରିକତା ଏ କାବ୍ୟକୁ ଭାବମୟ କରିଛି ।

ବିବେକ ଗ୍ରାହକ କୋଟି କବି ଆୟୁଘେନି
ବର୍ଣ୍ଣିଥିଲେ କବି କବିତ୍ୱକି ହେବ ମ୍ଳାନି ହେଁ
ଭାବେ ବୈଶ୍ୟ ପରାୟେ ମୁଁ ମେଲିଛି ପସରା
ଭାବ ସବୁ ଦ୍ରବ୍ୟକୁ ଗ୍ରାହକ ଲୋଡା ପରାହେ ।

ସରଳଭାଷାରେ ବିଦଗଧ କବିଙ୍କର ପାଠକମାନଙ୍କୁ ଏ ଆହ୍ୱାନର ପଟାନ୍ତର ନାହିଁ । ଅଭିମନ୍ୟୁଙ୍କ ପରମାରାଧ୍ୟା ରାଧା - ହରିଙ୍କ ରୂପବର୍ଣ୍ଣନାରେ ପରିବେଷିତ ବିଦଗଧ ଚିନ୍ତାମଣିର ଅମୂଲ୍ୟପଦ ଦୁଇଟିରୁ କବିଙ୍କୁ ଓଡିଆ ସାହିତ୍ୟର ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଭାବେ ସ୍ପଷ୍ଟ

ବାରିହୁଏ ଓ ଶ୍ରୀ ରାଧାଙ୍କ ରୂପ ବର୍ଣ୍ଣନା ଏହିପରି
ବିଶ୍ୱକାନ୍ତି ସାର ପୀୟୁଷ ଗୋଳି
ବିଧି ବନାଇଛି ଶୋଭା ପିତୁଳୀ
ବରଦୀପ୍ତି ଟାଙ୍ଗଣାରେ ଝାଳିଲା
ବିଚିତ୍ର ହେମ ରସାଣେ ଶାଣିଲା
ବିଗ୍ରହ ଲାବଣ୍ୟ ନୀରେ ଯେ
ବୁଡାଇ ଥୋଇ ଜୀବନ୍ୟାସ କରିଛି ପରା
ମୋହନ ମନ୍ତ୍ରରେ ଯେ

ସେହିପରି ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା କରିବାକୁ ଯାଇଁ ଲେଖିଛନ୍ତି ।

ସଂସାର କାନ୍ତି ସାରକୁ ଆସିଲା
ଅମୃତ ମିଶାଇ ବାଟି ଛାଣିଲା
ବିହି ମୂରତିକୁ ନିର୍ଯ୍ୟାସିଲା ।
ମର୍କତ ରଶାଣରେ ରସାଣିଲା ସେ
ଉପମା ସୃଷ୍ଟି ଜିଣିଲା ଯେ
ମୋହନ ମନ୍ତ୍ରରେ ଜୀବନ୍ୟାସ କରି ସାରା ସଂସାର ଜାଣିଲା ହେ

ବିଦ୍‌ଗଧ ଚିନ୍ତାମଣି ଅବର୍ଣ୍ଣନୀୟ । ଯୁଗ ଯୁଗ ଧରି ଓଡିଆ ସାହିତ୍ୟର ମଣିହୋଇ ରହିବ । ଯାଜପୁର ମାଟି ଏପରି କବିଙ୍କୁ ଜନ୍ମ ଦେଇ ଧନ୍ୟ ହୋଇଛି । କାବ୍ୟ ମଧ୍ୟରେ ସେ ମଧ୍ୟଯୁଗୀୟ ରୀତି, ଶବ୍ଦଚାତୁରୀ, ଅଳଙ୍କାର ଓ ବିବିଧ ରସର ଅବତାରଣା କରିବା

ସହିତ କିଛି  କାଳଜୟୀ ପଦ ମଧ୍ୟ ଛାଡି ଦେଇଛନ୍ତି । ଏହି ସର୍ବକାଳୀନ ପଦରୁ କେତୋଟି ଉଦ୍ଧୃତ ହେଲା ବିଦଗଧ ଚିନ୍ତାମଣି ସମ୍ବନ୍ଧରେ କବି ସତର୍କ କରାଇ ଦେଇ କହିଛନ୍ତି ।

ବିଦଗଧ ଓ ବିଦଗଧ ଚିନ୍ତାମଣି ପ୍ରବନ୍ଧ
ବୁଧଙ୍କ ମନକୁ ବୋଧକ ଅଙ୍କ ଏଥିକି ଅନ୍ଧ ।
ସେହିପରି ବିଦଗଧ ଚିନ୍ତାମଣିର ପ୍ରଥମ ପଦ
ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧାହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ।
ଏ କାଳଜୟୀ ବାର୍ତ୍ତା ଅଭିମନ୍ୟୁଙ୍କୁ ଅମର କରି ରଖିବ ।


ସହାୟକ ପୁସ୍ତକ :

୧. ଅଭିମନ୍ୟୁ ଗ୍ରନ୍ଥାବଳୀ (୧ମ ଭାଗ)
ସ: ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ୧୯୭୭.

୨. ଓଡିଆ ସାହିତ୍ୟର ଇତିହାସ - ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

୩. ଅଭିମନ୍ୟୁ ସ୍ମରଣିକା - ଅଭିମନ୍ୟୁ ସ୍ମୃତି ସଂସଦ ଭୁବନେଶ୍ୱର ୧୯୭୪.
ସଂ–ଡଃ ଆଶୁତୋଷ ପଟ୍ଟନାୟକ

୪. ଓଡିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ - ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ।

୫. ଉତ୍କଳ ପ୍ରତିଭା - ମହେନ୍ଦ୍ର ପଟ୍ଟନାୟକ (୧୯୪୪)




# ଆଦିନେତା- ବିଚିତ୍ରାନନ୍ଦ ଦାସ

୧୮୦୩ ମସିହାରେ ଇଂରେଜମାନେ ଓଡିଶାର ଶାସନ ଦାୟିତ୍ୱଗ୍ରହଣ କଲାପରେ ଓଡିଶାର ରାଜନୈତିକ ମାନଚିତ୍ର ଓ ପ୍ରଶାସନିକ ବ୍ୟବସ୍ଥାର ଏକ ବୈଚିତ୍ର୍ୟ ଉପଲବଧ୍ ହୁଏ । ଆଧୁନିକ କଟକ-ପୁରୀ- ବାଲେଶ୍ୱର ଜିଲ୍ଲା ଯାହା ମୋଗଲ ଓ ମରହଟ୍ଟାଙ୍କ ସମୟରେ ମୋଗଲବନ୍ଦୀ ଭାବେ ପରିଚିତ ହେଉଥିଲା ତାହା ଇଂରେଜମାନଙ୍କ ସମୟରେ ଓଡିଶା ଡିଭିଜନ୍ ନାମରେ ଜଣେ କମିଶନରଙ୍କ ଅଧିନରେ ୧୮୨୮ ଖ୍ରୀ ରୁ ରହିଲା ଓ ବଂଗ ପ୍ରେସିଡେନସୀର ପ୍ରଶାସନିକ ଆଇନ୍ ଏଥିରେ ପ୍ରଯୁଜ୍ୟ ହେଲା । ଓଡିଆ ଡିଭିଜନ ଚିରଦିନ ଅବହେଳିତ ରହିଥିଲା ବିଭିନ୍ନ କାରଣ ପାଇଁ । ପ୍ରଥମତଃ ଇଂରେଜ ଅଫିସରମାନେ ଏହି ଡିଭିଜନର ଉନ୍ନତି ପାଇଁ ଉଦାସୀନ ଥିଲେ । ଦ୍ୱିତୀୟତଃ ଓଡିଶାର ପ୍ରକୃତ ସମସ୍ୟା ସମ୍ବନ୍ଧରେ ଇଂରେଜମାନେ ଓଡିଆ ଜାଣିନଥିବାରୁ ଓ ଓଡିଶାରେ ସମ୍ବାଦପତ୍ର ନଥିବାରୁ ଜାଣିପାରୁନଥିଲେ । ତୃତୀୟତଃ ପ୍ରଶାସନିକ କଳରେ ଅଣଓଡିଆ କର୍ମଚାରୀଙ୍କ ପ୍ରାଧାନ୍ୟ ବହୁମାତ୍ରାରେ ଥିଲା ଇଂରେଜମାନେ ଓଡିଶାକୁ ଏକ ରାଜସ୍ୱ ଆଦାୟ ଅଂଚଳ, ଏହାର ଭାଷା ବିକୃତ ବଂଗଳା ଓ ରାଜନୀତି ଦୃଷ୍ଟିରୁ ଏକ ଗୁରୁତ୍ୱହୀନ ଡିଭିଜନ ବୋଲି ଇଂରେଜ ଦରବାରରେ ସର୍ବଦା ପ୍ରତିଧ୍ୱନିତ ହେଉଥିଲା । ସେହି ଅନ୍ଧାରୀ ସମୟରେ ଓଡିଆ ଡିଭିଜନର କମିଶନର ଭାବେ ଟି.ଇ. ରେଭେନସା ୨୪.୦୬.୧୮୬୫ ରୁ କାର୍ଯ୍ୟରେ ଯୋଗଦେଇ ଓ ୧୩ ଅପ୍ରେଲ ଠାରୁ ୭ ମେ ମାସ ପର୍ଯ୍ୟନ୍ତ ମଝିରେ ଛୁଟିରେ ରହି ପରେ କମିଶନ ଭାବେ ୧୮୮୦ ଯାଏଁ ଦାୟିତ୍ୱ ନେଲେ । ରେଭେନସା ଙ୍କ ପରି ଉତ୍କଳ ହିତୈଷୀ ମନିଷୀ ମଧ ନିଜ କର୍ତ୍ତବ୍ୟର ଅବହେଳା ପାଇଁ ବିଶେଷ କରି ପ୍ରଶାସନିକ ଅନଭିଜ୍ଞତା ଉଦାସୀନତା ଓ ବଂଗୀୟ କର୍ମଚାରୀ ମାନଙ୍କ ମିଥ୍ୟା ରିପୋର୍ଟ କୁ ବିଶ୍ୱାସ କରି ୧୮୬୬ ର ନଅଙ୍କ ଦୁର୍ଭିକ୍ଷ ସମୟରେ ନିଜର କର୍ତ୍ତବ୍ୟ ସଂପାଦନ ଠିକ୍ ଭାବରେ କରିପାରିନଥିବା କଥା ବହୁ ଐତିହାସିକ ସ୍ୱୀକାର କରିବା ସହ ନିଜେ ସ୍ୱୟଂ ରେଭେନସା ସାହେବ ମଧ ଅନୁତାପ କରିଛନ୍ତି ।

ତାଙ୍କ ବିରାଟ ସିରସ୍ତାରେ ଏକ ସିରସ୍ତାଦାର ପଦବୀରେ କାର୍ଯ୍ୟରେ ଯୋଗଦେଇଥିଲେ ବିଚିତ୍ରାନନ୍ଦ ଦାସ । ଏହି ସିରସ୍ତଦାର ନିଜର କର୍ତ୍ତବ୍ୟ ନିଷ୍ଠାବଳରେ କମିଶନର ଅଫିସରେ ଏପରି ବିଶ୍ୱସ୍ତ ହୋଇ ଉଠିଥିଲେ ଯେ ଦିନେ ସେ ରେଭେନସା ସାହେବଙ୍କ ଦକ୍ଷିଣହସ୍ତ ବୋଲି ପ୍ରଂଶସିତ ହୋଇଥିଲେ । କମିଶନର ଅଫିସରେ ତାଙ୍କ ଯୋଗଦାନ ଭବିଷ୍ୟତରେ ସ୍ୱତନ୍ତ୍ର ଓଡିଶା ଗଠନ ପାଇଁ ଶୁଭଶଂଖ ବାଦନ କରିଥିଲା ତାଙ୍କ

ସମ୍ବନ୍ଧରେ ବିବରଣୀ ଦେବାକୁ ଯାଇଁ ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ କହେ ।

"ଉତ୍କଳର କରଣ ବଂଶୀୟ ୰ ବିଚିତ୍ରାନନ୍ଦ ଦାସ ଜଣେ ଦେଶ ହିତୈଷୀ । ଓଡ଼ିଶାକୁ ଇଂରେଜମାନେ ଅଧିକାର କଲାପରେ ଯେଉଁ କେତେଜଣ ଓଡିଆ ପ୍ରଥମେ ସରକାରୀ ଚାକିରୀ କରିଥିଲେ, ସେମାନଙ୍କ ମଧ୍ୟରୁ ସେ ଜଣେ ଓଡିଶା ଜାତିର, ଭାଷାର ସେ ଜଣେ ଉନ୍ନତି ଓ ଓଡିଶାର ଜାତୀୟତା ରକ୍ଷାପାଇଁ ସେ ବହୁତ ଯତ୍ନ କରିଥିଲେ । ଓଡିଶାରେ ବଂଗଳୀ ଭାଷାରେ ପ୍ରକୋପ ବିରୁଦ୍ଧରେ ଯେଉଁମାନେ ଚେଷ୍ଟାକରି ସରକାରଙ୍କ ଦ୍ୱାରା ଓଡିଆ ଭାଷାକୁ ସ୍ୱତନ୍ତ୍ର ଭାଷା ରୂପେ ସ୍ୱୀକୃତ କରିଥିଲେ, ସେମାନଙ୍କ ମଧ୍ୟରୁ ଏ ଜଣେ । ଏହାଙ୍କ ଘର ଯାଜପୁର ଅଂଚଳରେ ।" ଯାଜପୁର ଜିଲ୍ଲାରେ କଣ୍ଟାବଣିଆ ଗ୍ରାମରେ ତାଙ୍କର ଜନ୍ମ (୧୮୨୭ ମସିହା । ପିତା– ତ୍ରିଲୋଚନ ଦାସ) । ସେ ପାଠ ପଢାଶେଷ କରି କମିଶନରଙ୍କ ଅଫିସରେ ସାମାନ୍ୟ କିରାଣୀ ଚାକିରୀ ପାଇଥିଲେ । ବହୁ ବିଦେଶୀ କର୍ମଚାରୀଙ୍କ ଗହଣରେ ସେ ଏକମାତ୍ର ଓଡିଆ ଯୁବକ । ସେ ସମୟରେ ଚିତ୍ର ଦେବାକୁ ପାଇଁ ଫକୀରମୋହନ ସେନାପତି ଲେଖିଛନ୍ତି । "ଡାକଘର କିରାଣୀ ଟି ନୁହେଁ ମଧ୍ୟ ଦେଶୀ । ନିଜର ସାଧନା ଓ ନିଷ୍ଠା ପାଇଁ ୰ ଦାସ ଜଣେ ଅସାମାନ୍ୟ ବ୍ୟକ୍ତିବିଶେଷ ଭାବେ ସରକାରୀ ଦପ୍ତରରେ ନିଜକୁ ପ୍ରତିଷ୍ଠା କରିପାରିଥିଲେ ।

ସରକାରୀ କର୍ମଚାରୀ ଭାବରେ ଥାଇ ମଧ୍ୟ ଓଡିଶାର ଦୁର୍ଦ୍ଦଶା କଥା ସେ ସର୍ବଦା ଚିନ୍ତା କରୁଥିଲେ । ତାଙ୍କ ଜାତୀୟତାବାଦୀ ମସ୍ତିଷ୍କରୁ ସର୍ବପ୍ରଥମେ ୨ଟି ମହାନ କଥା ଆତ୍ମପ୍ରକାଶ କରିଥିଲା । ପ୍ରଥମତଃ ଓଡିଆ ଭାଷା ସୁରକ୍ଷା ଓ ଦ୍ୱିତୀୟତଃ ଓଡିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନରେ ସ୍ୱପ୍ନ । ସେ ଖାଲି ସ୍ୱପ୍ନ ଦେଖୁନଥିଲେ ବଂର ଏହି ଚିନ୍ତାକୁ ବାସ୍ତବ ରୂପ ଦେବା ପାଇଁ ସରକାରୀ କଳ ମଧ୍ୟରେ ଥାଉ ମଧ୍ୟ, ବହୁ କାର୍ଯ୍ୟ କରିଯାଇଛନ୍ତି । ବାଲେଶ୍ୱର ରାଜା ଶ୍ୟାମାନନ୍ଦ ଦେଓ ବିଚିତ୍ରାନନ୍ଦ ଦାସ ଆଦି ବିଶିଷ୍ଟ ବ୍ୟକ୍ତିଙ୍କ ଯତ୍ନରେ ୧୮୭୫ ମସିହାରେ ଓଡିଆମାନଙ୍କୁ ଏକ ଶାସନାଧିନ କରାଯିବ ଦାବୀ ଉପରେ ଆନ୍ଦୋଳନ କରାଗଲା । ବଂଗଳା ର ଛୋଟ ସାର ରିଚାର୍ଡ ଟେମ୍ପଲଙ୍କ ଓଡିଶା ପରିଦର୍ଶନ ବେଳେ ୧୮୭୫ ଫେବୃୟାରୀ ମାସରେ ଏହି ଦାବୀ ପତ୍ର ବାଲେଶ୍ୱର ଠାରେ ଦିଆଯାଇଥିଲା (ସମ୍ବାଦପତ୍ର ଉନବିଂଶ ଶତାବ୍ଦୀର ଓଡିଶା ଡ ଗୋପାଳଚନ୍ଦ୍ର ମିଶ୍ର ପୃଷ୍ଠା – ୧୭) ଏହି ଦାବୀ ପତ୍ର ବୋଧେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପାଇଁ ସରକାରୀ ସ୍ତରରେ ପହଞ୍ଚିଥିବା ପ୍ରଥମ ଦାବୀ ପତ୍ର ଏହି କାର୍ଯ୍ୟରେ କର୍ଣ୍ଣଧାର ବିଚିତ୍ରାନନ୍ଦ ଦାସ ଯଥାର୍ଥରେ ଆଦିନେତା । ସେତେବେଳେ ଉତ୍କଳ ଗୌରବ ମଧୁବାବୁ କଲିକତାରେ ଅବସ୍ଥାନ କରୁଥିଲେ ଓ ୧୮୮୧

ପରେ ଆସି ଉତ୍କଳସଭା ଗଠନ କଲେ । ତାଙ୍କ ପାଇଁ ବିଚିତ୍ରାନନ୍ଦ ଦାସ ବହୁ ଆଗରୁ ଏକ ଜାତୀୟ ମଂଚ ନିର୍ମାଣ କରି ଯାଇଥିଲେ । ତାଙ୍କ ଜାତୀୟ ମଂଚ ନିର୍ମାଣ ର ପୃଷ୍ଠଭୂମି ସମ୍ବନ୍ଧରେ ଜଣାଯାଏ ଯେ ୧୮୭୪ ସାଲ ନଭେମ୍ବର ଆଠ ତାରିଖ ଶନିବାର ରାତ୍ରିରେ ବାବୁ ବିଚିତ୍ରାନନ୍ଦ ଦାସଙ୍କ ବୃହତ୍ ଉଦ୍ୟାନରେ କଟକ ଦରବାରକୁ ଆସିଥିବା ଓଡ଼ିଶାର ସମସ୍ତ ଜମିଦାର ଓ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର ଏକତ୍ର ମିଳନ ହୋଇଥିଲା । ଏହି ଏକତ୍ରି କରଣର ନାମ ମେଳ ବର୍ଦ୍ଧିନୀ ସମାରୋହ । ଏହା ସମ୍ବନ୍ଧରେ କୁହାଯାଇଛି ଯେ ଦରବାର ଭିନ୍ନ କୌଣସି ସଭାରେ ଗଡଜାତ ରାଜାମାନେ ଏକତ୍ର ହୋଇ ନଥିଲେ । ଏହି ସଭାରେ ସେମାନେ ଓ ଭଦ୍ର ମଣ୍ଡଳୀର ଅଧିକାଂଶ ଲୋକ ଏକତ୍ରିତ ହୋଇଥିବାରୁ ଏହାକୁ ଅଭିନବ ବୋଲି କହିବାକୁ ହେବ । ବସ୍ତୁତଃ ଏଠାରେ ଏପରି ସଭା କେବେ ହୋଇନଥିଲା (ଆଧୁନିକ ଓଡ଼ିଆ ସାହିତ୍ୟରେ ଇତିହାସ ପୃଷ୍ଠା - ୧୯୩ ନଟବର ସାମନ୍ତରାୟ) ବିଚିତ୍ରାନନ୍ଦ ଦାସଙ୍କ ବ୍ୟକ୍ତିଗତ ଉଦ୍ୟମରେ କଟକଠାରେ ୧୮୭୪ ରେ ଯେଉଁ ମେଳ ବର୍ଦ୍ଧିନୀ ସମାରେହ ଅନୁଷ୍ଠିତ ହୋଇଥିଲା ତାହାର ପୂର୍ଣ୍ଣ ବିକଶିତ ରୂପ ମଧୁବାବୁଙ୍କ ନେତୃତ୍ୱରେ ୧୯୦୩ ରେ ଉତ୍କଳ ସମ୍ମିଳନୀ ନାମରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସ୍ୱତନ୍ତ୍ର ସଂଗଠନର ମାନ୍ୟତା ଲାଭ କରିଥିଲା । ବିଚିତ୍ରାନନ୍ଦ ଦାସଙ୍କ ଅବଦାନ ଓଡ଼ିଆଭାଷା ସମୃଦ୍ଧି କ୍ଷେତ୍ରରେ ମଧ କମ୍ ନୁହେଁ । ନିଜେ ଜଣେ ଲେଖକ ବି ଥିଲେ । ସେ କର୍ମବୀର ଗୌରୀଶଙ୍କର ଓ ବାଙ୍କିର ପ୍ରସିଦ୍ଧ ବିଦ୍ୱାନ ଗୋବିନ୍ଦରଥ ମିଶି ଓଡ଼ିଶାରେ ବ୍ରିଟିଶ ସାମ୍ରାଜ୍ୟର ଇତିହାସ ଲେଖିଥିଲେ । ରାଧାନାଥ ରଥ, ଏ ସମ୍ବନ୍ଧରେ ସୂଚନା ଦେଇ ତାଙ୍କ ପ୍ରଦତ୍ତ ବ୍ରଜସୁନ୍ଦର ଦାସ ଜନ୍ମଶତବାର୍ଷିକ ଉଦ୍‌ବୋଧନ ରେ କହିଛନ୍ତି ସେତେବେଳେ ସରକାର ଘୋଷଣା କଲେ ଯେ ଓଡ଼ିଆରେ ଯଦି କେହି ଓଡ଼ିଶାର ବ୍ରିଟିଶ ସାମ୍ରାଜ୍ୟ ସମ୍ବନ୍ଧରେ ଇତିହାସ ପ୍ରଣୟନ କରେ, ତେବେ ସରକାର ତାଙ୍କୁ ପୁରସ୍କାର ଦେବେ । ସେଥିରେ ସହଯୋଗ କରିଥିଲେ ବାଂକୀ ଗୋବିନ୍ଦରଥ, ବିଚିତ୍ରାନନ୍ଦ ଦାସ ଓ ଗୌରୀଶଙ୍କର ବିଚିତ୍ରାନନ୍ଦ ଦାସ ଏ ଅଂଚଳର ଯେକି କଟକ ପ୍ରିଣ୍ଟିଂ ପ୍ରେସ ଓ ଉତ୍କଳ ଦୀପିକାର ମୁଖ୍ୟ ତାଙ୍କ ପରି ଜ୍ଞାନୀ ଲୋକ କମ୍ ଥିଲେ, ଓ ସ୍ନେହୀ ଲୋକ କମ୍‌ଥିଲେ । (ଦେଶପ୍ରାଣ ବ୍ରଜସୁନ୍ଦର) ବିଚିତ୍ରାନନ୍ଦ ଦାସ ମଧ କୃଷି ବିଜ୍ଞାନ ନାମକ ପୁସ୍ତକ ରଚନା କରିଥିଲେ । ୨୭.୧୨.୧୮୭୦ ମସିହାର ଉତ୍କଳ ଦିପୀକାର ସମ୍ବାଦ ଅନୁସାରେ ସ୍ଥାନୀୟ ଜମିଦାର ବାବୁଙ୍କୁ ବିତରଣ କରିବା ପାଇଁ ଗଉମେଣ୍ଟ ବଂଗ ବାବୁ ବିଚିତ୍ରାନନ୍ଦ ଦାସଙ୍କ ରଚିତ କୃଷି ବିଜ୍ଞାନ ବହି ୨୫୦ ଖଣ୍ଡ ନେବାକୁ ସମ୍ମତ ହୋଇଛନ୍ତି । ଏତେଦିନେ ଖଣ୍ଡିଏ ଓଡ଼ିଆ ପୁସ୍ତକ ପ୍ରତି ଉତ୍ସାହ ଦେବାକୁ ସରକାର ଦେଖାଦେଲେ । ଏହା ଆନନ୍ଦର ବିଷୟ (ସମ୍ବାଦ ପତ୍ରେ ଉନବିଂଶ ଶତାବ୍ଦୀର ଓଡ଼ିଶା ପୃ - ୧୬ ଏ ସମ୍ବାଦରୁ ସୂଚିତ

ହୁଏ) ଯେ, ଓଡିଆ ପୁସ୍ତକ ସରକାର କ୍ରୟ କରିବାର ପ୍ରଥମ ଗୌରବ ପାଇଥିଲେ ବିଚିତ୍ରାନନ୍ଦ ଦାସ ଓ ତାଙ୍କ ପୁସ୍ତକ କୃଷି ବିଜ୍ଞାନ । ଓଡିଶାରେ କୋବି ଚାଷ ର ବିକାଶ ସହ ଉଦ୍ୟାନ କୃଷି ର ଉନ୍ନତି ସମ୍ବନ୍ଧରେ ସେ ବହୁତ କାର୍ଯ୍ୟ କରିଥିଲେ । କରଣ କୁଣ୍ଡଳ ନାମକ ସେ ଏକ ପୁସ୍ତକ ଲେଖିଥିଲେ ତାହା ଅପ୍ରକାଶିତ "ଏହି କରଣ ମାନଙ୍କ ଆଦିମ ଅବସ୍ଥା ଉତ୍ପତ୍ତି ସ୍ଥାନ ଆଦି ଅନୁଶୀଳନ କରି ସ୍ଥିର କରିବା ପାଇଁ ବିଚିତ୍ରାନନ୍ଦ ଦାସ । କରଣ କୁଣ୍ଡଳ ନାମକ ପୁସ୍ତକ ରଚନା କରିଥିଲେ । ତାହା ମୁଦ୍ରିତ ହୋଇନାହିଁ । ସେଥିରେ ପାଣ୍ଡୁଲିପି ଆମର ହସ୍ତଗତ ହୋଇଛି । ବାବୁ ମହାଶୟ ବହୁତ ଶ୍ରମ ଓ ଯତ୍ନ କରି ଅନେକ ପୁରାଣରୁ କରଣ ଶବ୍ଦବୋଧକ ଅନେକ ଶ୍ଳୋକମାନ ସଂଗ୍ରହୀତ କରିଛନ୍ତି । ସାହିତ୍ୟ ଚର୍ଚ୍ଚା ବିଷୟରେ ଏପରି ଅଧ୍ୟବସାୟ ଓ ଯତ୍ନ ଏ ପ୍ରଦେଶରେ ଅତି ଅଳ୍ପ ଦେଖାଯାଏ । ମାତ୍ର ଦୁଃଖର ବିଷୟ ଯେ ବାବୁ ମହାଶୟ ଐତିହାସିକ ସୂତ୍ର କ୍ରମେ କରଣଙ୍କ ଇତିବୃତ୍ତ ସଂଗ୍ରହ କରିବାକୁ ଚେଷ୍ଟାକରିନାହାନ୍ତି ।"

(ଭୂମିକା ଓଡିଶା ଇତିହାସ) ୧୮୭୯

ପ୍ୟାରିମୋହନ ଆଚାର୍ଯ୍ୟ

ସରକାରୀ କାର୍ଯ୍ୟ ମଧ୍ୟରେ ଥାଇ ସେ ତାଙ୍କ ପରି ସମଚିନ୍ତାଧାରାଙ୍କ ବନ୍ଧୁମାନଙ୍କୁ ଉତ୍ସାହିତ କରି ଓଡିଆ ଭାଷାକୁ ଶିକ୍ଷାନୁଷ୍ଠାନରେ ମାତୃଭାଷା ମାଧ୍ୟମରେ ଶିକ୍ଷା ଦେବାପାଇଁ ରେଭେନସା ସାହେବ ସମେତ ଅନେକ ଇଂରେଜ କର୍ମଚାରୀକୁ ଦାବୀପତ୍ର ଦେଇଥିଲେ । ୧୮୬୮ ରେ ବିଚିତ୍ରାନନ୍ଦ ଦାସ ବଂଗ ସରକାରଙ୍କ ଠାରୁ ଓଡିଆ ଶିକ୍ଷାଦାନ ର ଭାଷାବୋଲି ଆଦେଶ ନାମା ଅଣାଇ ପାରିଥିଲେ କିନ୍ତୁ ଦୁର୍ଭାଗ୍ୟର କଥା ତତ୍କାଳୀନ D.P. । ଗ୍ରହଣ କରିନଥିଲେ "୧୮୬୯ ରେ ଉଇଲିୟମ ଲେସି ଅଧ୍ୟକ୍ଷତାରେ ଓଡିଆ ଭାଷାର ଉନ୍ନତି ଓ ପାଠ୍ୟ ପୁସ୍ତକ ପ୍ରଣୟନ ପାଇଁ ଏକ କମିଟି ଗଠନ କରାଯାଇଥିଲା ଏ କମିଟିର ସଦସ୍ୟ ଥିଲେ ଢେଙ୍କାନାଳର ରାଜା ଭାଗିରଥି ମହେନ୍ଦ୍ର ବାହାଦୂର, ବନମାଳୀ ସିଂ, ଦ୍ୱାରିକା ନାଥ ଚକ୍ରବର୍ତ୍ତୀ ଓ ବିଚିତ୍ରାନନ୍ଦ ଦାସ ଏହି କମିଟି ଗଠନ ପଛରେ ରେଭେନସା ସାହେବଙ୍କ ଉଦ୍ୟମ ପ୍ରଶଂସନୀୟ - (ଓଡିଶାର ଇତିହାସ ଡଃ ଯଜ୍ଞ କୁମାର ସାହୁ) ଯଦିଓ ମିଶନାରୀ ମାନଙ୍କ ଉଦ୍ୟମ ବଳରେ କେବଳ ଖ୍ରୀଷ୍ଟଧର୍ମ ପୁସ୍ତିକା ବାଇବେଲ ଛାପା । ହେବାପାଇଁ ମୁଦ୍ରଣ ଯନ୍ତ ଓ ଓଡିଆ ଅକ୍ଷର ଖୋଦେଇ୧୮୦୪ ରୁ ଆରମ୍ଭ ହୋଇଥିଲା କିନ୍ତୁ ଓଡିଶାକୁ ୧୮୩୭ ମସିହା ପର୍ଯ୍ୟନ୍ତ ମୁଦ୍ରଣଯନ୍ତ ପାଇଁ ଅପେକ୍ଷା କରିବାକୁ ପଡିଥିଲା । ଏହି ମୁଦ୍ରଣ ପ୍ରେସ ର ନାମ କଟକ ମିଶନ ପ୍ରେସ ଥିଲା ଏହି ମୁଦ୍ରଣ ପ୍ରେସ ର ନାମ କଟକ ମିଶନ ପ୍ରେସ ଏହା ଓଡିଶାର ମୁଦ୍ରଣ ଆବଶ୍ୟକତାକୁ ପୂରଣ କରିପାରୁନଥିଲା । ରେଭେନସା

ସାହେବଙ୍କ ପ୍ରରୋଚନାରେ ତାଙ୍କର ଦକ୍ଷିଣାହସ୍ତ ସିରସ୍ତାଦାର ବିଚିତ୍ରାନନ୍ଦ ଦାସ ଓ ଅନ୍ୟମାନଙ୍କ ଯତ୍ନ ଯୋଗୁ କଟକ ପ୍ରିଣ୍ଟିଂ ପ୍ରେସ (୧୮୬୬) ରେ ଆତ୍ମପ୍ରକାଶ କରିଥିଲା । "ଓଡିଶାର ଏହି ଦ୍ୱିତୀୟ ମୁଦ୍ରଣ ଯନ୍ତ୍ର କଟକ ପ୍ରିଣ୍ଟିଂ ପ୍ରେସ ଯଥାର୍ଥତଃ ନବୋତ୍କଳର ସଂଗଠକ ଓ ପଥ ପ୍ରଦର୍ଶକ (ଆଧୁନିକ ଓଡିଆ ସାହିତ୍ୟର ଇତିହାସ ଡଃ ନଟବର ସାମନ୍ତରାୟ (P-174) ଏହି ଐତିହାସିକ ପ୍ରେସ ଆଲମଚାନ୍ଦ ବଜାରରେ ପ୍ରତିଷ୍ଠିତ ହୋଇଥିଲା । ଏ ପ୍ରେସ ପ୍ରତିଷ୍ଠାର ଅନ୍ୟତମ, କର୍ଣ୍ଣଧାରା ବିଚିତ୍ରାନନ୍ଦ ଦାସର ଏହି ପ୍ରେସରୁ ୧୮୬୬ ରେ ଓଡିଶାର ସର୍ବପ୍ରଥମ ସାପ୍ତାହିକ ସମ୍ବାଦପତ୍ର "ଉତ୍କଳ ଦୀପିକା" ପ୍ରକାଶ କରିଥିଲେ ଗୌରୀଶଙ୍କର ରାୟ । ବିଚିତ୍ରାନନ୍ଦ ଦାସ ରାଜନୈତିକ ସ୍ତରରେ ଯଦି ଓ କିଛି କରିପାରି ନାହାନ୍ତି କିନ୍ତୁ ପ୍ରଶାସନିକ ସ୍ତରରେ ବହୁକାର୍ଯ୍ୟ କରିଛନ୍ତି । ରେଭେନସା ସାହେବଙ୍କୁ ପ୍ରଭାବିତ କରି ସେ ଓଡିଶାର ଶିକ୍ଷା ବିସ୍ତାର ପାଇଁ ବହୁକାର୍ଯ୍ୟ କରିଯାଇଛନ୍ତି । କଟକରେ ଏକ ଦ୍ୱିତୀୟ ଶ୍ରେଣୀ କଲେଜ, ବାଳିକା ବିଦ୍ୟାଳୟ, ମେଡିକାଲ ଓ ନର୍ମାଲ ସ୍କୁଲ ପ୍ରତିଷ୍ଠା, ଚାନ୍ଦବାଲି ପୋର୍ଟର ଉନ୍ନତି, ହାଇଲେଭଲ କେନାଲ ଆଦି ଜନହିତକର କାର୍ଯ୍ୟରେ ସେ ରେଭେନସା ଙ୍କୁ ପ୍ରଭାବିତ କରି ପାରିଥିଲେ । "୧୮୬୬ ଦୁର୍ଭିକ୍ଷରେ ଓଡିଆ ଜାତିପ୍ରତି କରିଥିବା ଅନ୍ୟାୟର ପ୍ରତିକାର ନିମନ୍ତେ ସେ ମନପ୍ରାଣ ଦେଇ ଓଡିଆଙ୍କ ଅକୃତ୍ରିମ ବନ୍ଧୁ ହୋଇଯାଇଥିଲେ । ଶ୍ରୀ ବିଚିତ୍ରାନନ୍ଦ ଦାସ ରେଭେନସାଙ୍କ ସିରସ୍ତାଦାର ଥିଲେ । ତାଙ୍କରି ପ୍ରେରଣାରେ ସାହେବ ଉଦ୍‌ବୁଦ୍ଧ ହୋଇ କଲେଜ ସ୍ଥାପନ କଲେ । ଓଡିଶାର ଏହି ମହନୀୟ ଶିକ୍ଷାନୁଷ୍ଠାନ ରେଭେନସା କଲେଜ ପ୍ରତିଷ୍ଠାରେ ବିଚିତ୍ରାନନ୍ଦ ଦାସଙ୍କ ଦାନ ଅବିସ୍ମରଣୀୟ। ୧୮୪୧ ରେ ସ୍ଥାପିତ କଟକ ଜିଲ୍ଲାସ୍କୁଲ , ୧୮୬୩ ରେ ଦ୍ୱିତୀୟ ଶ୍ରେଣୀ କଲେଜ ୧୮୭୬ ରେ ପ୍ରଥମଶ୍ରେଣୀ କଲେଜରେ ପରିଣତ ହେଲା ନାମ ରହିଲା ଓଡିଶା କଲେଜ, ରେଭେନସା କର୍ମକ୍ଷେତ୍ରରୁ ଅବସର ନେଲା ପରେ ୧୮୮୦ ରେ ଏହାର ନାମ ହେଲା ରେଭେନସା କଲେଜ" ଓଡିଶା ଆନ୍ଦୋଳନର ଇତିହାସ ପୃଷ୍ଠା-୪୦ ଆଦର ରେ ରେଭେନସା ସାହେବ ତାଙ୍କୁ My Little Prime Minister ବୋଲି କହୁଥିଲେ ।

ପ୍ରଶାସନିକ ସ୍ତରରେ ଥାଇ ଗୋଟିଏ ଜାତି ପାଇଁ ଏତେ କାମ କରିବାର ଉଦାହରଣ ଖୁବ୍ କମ ଦେଖାଯାଏ । ତାଙ୍କର ଦେଶ ପ୍ରୀତି, ନିଷ୍ଠା, ସାଧୁତା, ଅଧ୍ୟବସାୟ ଆଦି ଓଡିଶା ଇତିହାସରେ ଚିରସ୍ମରଣୀୟ ହୋଇ ରହିବ । ଯଥାର୍ଥରେ ଉତ୍କଳର ସେ ଥିଲେ ଆଦିନେତା ।

ସହାୟକ ପୁସ୍ତକ


୧. ପୂର୍ଣ୍ଣଚନ୍ଦ୍ର ଓଡିଶା ଭାଷାକୋଷ - ସଂଗୋପାଳ ଚନ୍ଦ୍ର ପ୍ରହରାଜ

୨. ଓଡିଶା ଆନ୍ଦୋଳନର ଇତିହାସ

ପଣ୍ଡିତ ବାଇକୋଳି ମହାପାତ୍ର

୩. ଆଧୁନିକ ଓଡିଆ ସାହିତ୍ୟରେ ଇତିହାସ

ଡଃ ନଟବର ସାମନ୍ତରାୟ ।

୪. ଓଡିଶା ର ଇତିହାସ - ଡଃ ଯଜ୍ଞ କୁମାର ସାହୁ

୫. ସଂବାଦ ପତ୍ରେ ଉନବିଂଶ ଶତାବ୍ଦୀର ଓଡିଶା

ଡଃ ଗୋପାଳ ଚନ୍ଦ୍ର ମିଶ୍ର

୬. କୋଣାର୍କ ପତ୍ରିକା ଓଡିଆ ସାହିତ୍ୟ ଏକାଡେମୀ



# ଦେଶପ୍ରାଣ-ବ୍ରଜସୁନ୍ଦର ଦାସ

ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ସ୍ୱତନ୍ତ୍ର ସ୍ଥିତି ଶୂନ୍ୟ ଓଡ଼ିଶାର କଳା, ସଂସ୍କୃତି, ସାହିତ୍ୟ, ରାଜନୀତି, ଭାଷାର ଆଧୁନିକୀକରଣ ଆଦି, ଏକ ନୂତନ ବୌଦ୍ଧିକ ପ୍ରଭାବରେ ପ୍ରଭାବିତ ହୋଇଥିଲା ଏହି ସମୟରେ କିଛି ଦେଶପ୍ରେମୀ ଶିକ୍ଷିତ ଯୁବକ ଓ ଶିକ୍ଷାବିତ୍ ଯଥା ଆଦିନେତା ବିଚିତ୍ରାନନ୍ଦ ଦାସ, ଉତ୍କଳ ଗୌରବ ମଧୁସୁଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଆବିର୍ଭାବ ଘଟି ଓଡ଼ିଶାର ଜାତୀୟ ଜୀବନକୁ ନବ ଦିଶା ପ୍ରଦାନ କରିଥିଲା । ଜାତୀୟ ସ୍ୱାଧୀନତା ଆନ୍ଦୋଳନ ସହିତ ମିଳାଇ ପ୍ରଦେଶିକ ଦାବୀକୁ ସେମାନେ ଯଥାର୍ଥ ଭାବେ ଉପସ୍ଥାପନ କରିପାରୁଥିଲେ । ସମସ୍ତଙ୍କର ଚିନ୍ତାର କାରଣ ୨ଟି । ଗୋଟିଏ ହେଲା ଭାଷାର ସୁରକ୍ଷା ଓ ଅନ୍ୟଟି ହେଲା ଓଡ଼ିଶାର ସ୍ୱତନ୍ତ୍ର ପରିଚୟ । ସ୍ୱତନ୍ତ ଉତ୍କଳ ପ୍ରଦେଶ ଗଠନ ।

ଓଡ଼ିଶାର ଏକମାତ୍ର କଲେଜ ରେଭେନସା କଲେଜ ହଷ୍ଟେଲ ମଧରେ ଦୁଇଜଣ ଜାତିପ୍ରାଣ ଛାତ୍ରଙ୍କ ବ୍ୟଥିତ ହୃଦୟରୁ ସେଦିନ ଆପେ ଆପେ ବାହରି ଥିଲା । "ଓଡ଼ିଶାକୁ ଆଉ ବଂଗ ସହିତ ସାମିଲ କରି ରଖିବା ନାହିଁ ବରଂ ମଧ ପ୍ରଦେଶ ସହିତ ରଖିବା" । ସେ ସମୟରେ ବଙ୍ଗ, ମାଡ୍ରାସ ଓ କେନ୍ଦ୍ର ପ୍ରେସିଡେନସିରେ ଓଡ଼ିଶା ବିଭାଜିତ ଅବସ୍ଥାରେ ଶାସିତ ହେଉଥିଲା । ଏବଂ ଶ୍ରେଣୀର ଛାତ୍ର ଦୁଇଜଣ ହେଲେ ଉତ୍କଳମଣି ଗୋପବନ୍ଧୁ ଦାସ ଓ ବ୍ରଜସୁନ୍ଦର ଦାସ । ଓଡ଼ିଶା ବଂଶବାସୀମାନଙ୍କ ଚକ୍ରାନ୍ତରେ ଅସ୍ଥିର ହୋଇଥାଏ । ସେମାନେ ଓଡ଼ିଆ ଭାଷାକୁ ସଂପୂର୍ଣ୍ଣ ରୂପେ ମୂଳୋତ୍ପାଟନ କରିବାକୁ ଉଦ୍ୟମରେ ଥାନ୍ତି ଓ ଓଡ଼ିଶାର ସ୍ୱତନ୍ତ୍ର ଦାବୀକୁ ଏଡାଇ ଦେଇ ଚାଲିଥାନ୍ତି । ତତ୍କାଳୀନ ରାଜା, ମହାରାଜା ଜମିଦାର ମାନେ ବ୍ରିଟିଶ ସରକାରଙ୍କ ଛତ୍ରଛାୟା ତଳେ ରହି ଦେୱାନ ବାହାଦୂର, ରାୟବାହାଦୂର, ଖାଁ ବାହଦୂର ଆଦି ରାଜକୀୟ ପଦବୀ ସହିତ ଡେପୁଟି ମାଜିଷ୍ଟ୍ରେଟ ଚାକିରୀ ପାଇ ଆତ୍ମ ବିସ୍ମୃତ । ଓଡ଼ିଶା କଥା ସେହି ଦୁର୍ଦ୍ଦିନରେ ଯେଉଁମାନେ ଭାବିଥିଲେ ସେମାନଙ୍କ ମଧରୁ ବ୍ରଜବାବୁ ସ୍ମରଣୀୟ ।

ଯାଜପୁରର କଣ୍ଟାବଣିଆ ଗ୍ରାମରେ ତା ୦୨.୦୭.୧୮୮୦ ମସିହାରେ ଏକ ଜମିଦାର ପରିବାରରେ ଜନ୍ମ । ତାଙ୍କ ପିତା ଶ୍ୟାମସୁନ୍ଦର ଦାସ ଓ ପ୍ରପିତ । ହରେକୃଷ୍ଣ ଦାସ୍ ଉଭୟ ଜମିଦାର ଥିଲେ ଓ ଡେପୁଟି ମାଜିଷ୍ଟ୍ରେଟ କ୍ଷମତା ଲାଭ କରିଥିଲେ ।ତାଙ୍କ ମାଙ୍କ ନାମ ଥିଲା ସ୍ୱର୍ଣ୍ଣପ୍ରଭା ଦେବୀ, ତାଙ୍କ ଶଶୁର ଜମିଦାର ସୁଦାମ ଚରଣ ନାୟକ ମଧ ଜଣେ

ଡେପୁଟି ମାଜିଷ୍ଟ୍ରେଟ୍ । ତାଙ୍କ ବାପା ଜମିଦାରୀ ପରିଚାଳନା କରିବା ପାଇଁ ବର୍ତ୍ତମାନର କଏଣା ପୂର୍ବନାମ ହରେକୃଷ୍ଣ ପୁର ପ୍ରଚଳିତ ନାମ ସୟଦପୁର ଠାରେ କଚେରୀ କରି କ୍ରମଶଃ ବସବାସ କରିଆସିଛନ୍ତି । ଏତେବଡ ଜମିଦାରୀ ପୃଷ୍ଠଭୂମି ମଧ୍ୟରୁ ବ୍ରଜବାବୁଙ୍କ ପରି ଦେଶପ୍ରେମୀ ସୃଷ୍ଟି ହୋଇଥିଲେ ତାଙ୍କର ଅସୀମ ତ୍ୟାଗ ବଳରେ । ୧୯୦୦ ମସିହାରେ ସେ ରେଭେନସା କଲେଜରୁ (F.A. Degree) ଲାଭ କରିଥିଲେ ଓ (1902) ରେ କଲିକତା ପ୍ରେସିଡେନସୀ କଲେଜରୁ (B.A.) ପାସ କରିଥିଲେ । ଛାତ୍ର ଅବସ୍ଥାରୁ ତାଙ୍କ ଉପରେ ସୁରେନ୍ଦ୍ରନାଥ ବାନାର୍ଜି, ଲୋକମାନ୍ୟ ତିଳକ, ଗୋପାଳକୃଷ୍ଣ ଗୋଖେଲ ଆଦି ମହାପୁରୁଷଙ୍କ ପ୍ରଭାବ ପଡିଥିଲା ଛାତ୍ର ଜୀବନରେ ସେ ଗୋପବନ୍ଧୁ ଦାଶ, ଜଗବନ୍ଧୁ ସିଂ ଲକ୍ଷ୍ମୀକାନ୍ତ ମହାପାତ୍ର, ଖାତନାମା ଓକିଲ ଗୋକୁଳାନନ୍ଦ ଚୌଧୁରୀ ବିଶେଷ କରି ଉତ୍କଳ ଗୌରବଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ । ସେ ଛାତ୍ର ଅବସ୍ଥାରେ ମଧ୍ୟ ରେଭେନସା କଲେଜର ରସାୟନ ଅଧ୍ୟାପକ ଡଃ ଯୋଗେଶ ଚନ୍ଦ୍ର ରାୟଙ୍କ ପରି ବିଶିଷ୍ଟ ବ୍ୟକ୍ତିଙ୍କ ସାନିଧ୍ୟରୁ ଦେଶପ୍ରାଣତା ଶିକ୍ଷା କରିଥିଲେ । ଛାତ୍ର ଅବସ୍ଥାର ଅନୁସନ୍ଧିତ୍ସା ତାଙ୍କୁ ପରବର୍ତ୍ତୀ ଜୀବନରେ ମହତ୍ତର କରିଥିଲା ।

ତୁଳସୀ ଦୁଇ ପତ୍ରରୁ ବାସିଲା ପରି ଛାତ୍ର ଅବସ୍ଥାରୁ ବ୍ରଜବାବୁଙ୍କ ସାଂଗଠନିକ ଉଦ୍ୟମର ପରିଚୟ ମିଳେ । ରେଭେନସା କଲେଜ ହଷ୍ଟେଲ ପରିସରରୁ ସେ ତାଙ୍କ ବନ୍ଧୁ ଗୋପବନ୍ଧୁ ଦାଶ, ଲୋକନାଥ ପଟ୍ଟନାୟକ ମିଶି "କର୍ତ୍ତବ୍ୟ ବୋଧିନୀ ସଭା" ଗଠନ କଲେ ଓ ଏହି ସଂଗଠନ ମାଧ୍ୟମରେ ସେ କଲିକତା ବିଶ୍ୱବିଦ୍ୟାଳୟରେ ଓଡିଆ ପାଠ୍ୟକ୍ରମର ଶୁଭାରମ୍ଭ କରିଥିଲେ ୧୯୦୨ ମସିହାଠାରୁ ୧୯୦୨ ମସିହାରେ ବଙ୍ଗଳାର ଛୋଟଲାଟ ଉଡବର୍ଣ୍ଣ ସାହେବ ଯେ କି କଲିକତା ବିଶ୍ୱବିଦ୍ୟାଳୟର ଡିରେକ୍ଟର ବି ଥିଲେ ତାଙ୍କ ଦ୍ୱାରା ଓଡିଆ ପାଠ୍ୟ କ୍ରମର ଶୁଭାରମ୍ଭ ହେଲା । କର୍ତ୍ତବ୍ୟ ବୋଧିନୀ ସଭାଟି ଓଡିଆମାନଙ୍କୁ କେହି ହତାଦର କଲେ । କିମ୍ବା ଓଡିଆ ସଂସ୍କୃତି ସମ୍ବନ୍ଧରେ ଯଦି କେହି ଅପତ୍ତି ଜନକ କଥା କହେ ତେବେ ବ୍ରଜବାବୁଙ୍କ ମଂଚ ସର୍ବପ୍ରଥମେ ପ୍ରତିବାଦ ଜଣାଇଥାଏ । ଉଦାହରଣ ସ୍ୱରୂପ ନନ୍ଦକିଶୋର ବଳଙ୍କ "ଓଡିଆ ଲଳନା କବିତା" ଓଡିଆ ନାରୀର ବେଶଭୂଷାକୁ ନିନ୍ଦା କରୁଥିବାରୁ କର୍ତ୍ତବ୍ୟ ବୋଧିନୀ ସଭା ତରଫରୁ ବ୍ରଜବାବୁ ଉତ୍କଳ ସାହିତ୍ୟର ସଂପାଦକଙ୍କ ପାଖରେ ମଧ୍ୟ ଆପତ୍ତି ଉଠାଇବାକୁ ପଛାଉ ନଥିଲେ । ସ୍ୱାଭିମାନ ହିଁ ତାଙ୍କ ଜୀବନରେ ବ୍ରତ ।

ବ୍ରଜବାବୁ ଓ ଗୋପବନ୍ଧୁ ଦାଶଙ୍କ ନେତୃତ୍ୱରେ ଏକ ଯୁବକ ସଂଘ ଛାତ୍ର ଅବସ୍ଥାରେ

ଗଠିତ ହୋଇଥିଲା । ସେ ସଂଘର ନାମଥିଲା ତରୁଣ ଉତ୍କଳ ସଂଘ (Young Utkal Association) ଯୁବକମାନଙ୍କ ମନରେ ଦେଶପ୍ରେମ, ଭାଷା ପ୍ରେମ ବୃଦ୍ଧି କରିବା ସହିତ ରିଲିଫ କାମ, ସମାଜସେବା କାର୍ଯ୍ୟ ଓ ସାଂସ୍କୃତିକ ରୁଚିବୋଧର ଉନ୍ନତି ଏହାର ଲକ୍ଷ୍ୟ ଥିଲା" ବ୍ରଜବାବୁଙ୍କ ଘର ପାଖ ପଛ ଅଗଣାରେ ଏ ବୈଠକ ନିୟମିତ ହୁଏ । ସେଠାରେ ଓଡିଆ ଓ ବଙ୍ଗଳାର ରାଜଦ୍ରୋହ ମୂଳକ କବିତା ଆବୃତ୍ତି ହୁଏ । ତାଙ୍କ ମାଣିକ ଘୋଷ ବଜାର ଘରଟି ତତ୍‌କାଳୀନ ଉତ୍କଳର ନେତୃବୃନ୍ଦଙ୍କ ପ୍ରସ୍ତୁତିଶାଳା ପରି କାର୍ଯ୍ୟ କରୁଥିଲା । ଗୋପବନ୍ଧୁ, ବ୍ରଜବାବୁ, ଅଭିରାମ ଭଞ୍ଜ ଏହିଠାରୁ ବନ୍ୟାଞ୍ଚଳ ପାଇଁ ରିଲ୍‌ଫ ଖସଡା ପ୍ରସ୍ତୁତ କରୁଥିଲେ , ୧୯୦୭ ରେ ନଅଙ୍କ ଦୁର୍ଭିକ୍ଷର ପରବର୍ତ୍ତୀ ଅବସ୍ଥା ଅନୁଧ୍ୟାନ ପାଇଁ ପ୍ରଖ୍ୟାତ ସାମ୍ବାଦିକ ବ୍ରିଟେନର ନେଭିଲ୍‌ସନ ସାହେବ ଓଡିଶା ଆସିଥିଲେ । ତାଙ୍କ ରିପୋର୍ଟ ଉପରେ ଓଡିଶାର ଆର୍ଥିକ ଅବସ୍ଥା ବହୁ ପରିମାଣରେ ନିର୍ଭରଶୀଳ ଥିଲା । ସେ ବ୍ରଜବାବୁଙ୍କ ଘରେ ରହୁଥିଲେ ଓ ତାଙ୍କ ଦପ୍ତର ମଧ୍ୟ ଏହି କୋଠାରୁ ଚଳାଉଥିଲେ ଲର୍ଡ କର୍ଜନଙ୍କ ବଂଗଭଂଗ ନୀତିର ବିରୋଧ କରି ସଶସ୍ତ୍ର ସଂଗ୍ରାମୀ ଖୁଦିରାମ ଘୋଷ ସେସନସ୍ ଜଜ୍ଜ କିଙ୍ଗଫୋର୍ଡକୁ ହତ୍ୟା କରି ଆତ୍ମଗୋପନ ପାଇଁ ଓଡିଶା ଆସିଥିଲେ ଓ ବ୍ରଜବାବୁଙ୍କ ଘରେ ସେ ଆଶ୍ରୟ ପାଇଥିଲେ ବଙ୍ଗର ଖ୍ୟାତିନାମା ବିପ୍ଳବୀ ଶଶୀଭୂଷଣ ରାୟ ମଧ୍ୟ ବ୍ରଜବାବୁଙ୍କ ବହୁଦିନ ଅତିଥି ହୋଇଥିଲେ । ଉତ୍କଳମଣି ଓ ଉତ୍କଳ ଗୌରବଙ୍କ ମଧ୍ୟରେ ଜାତୀୟ ସ୍ୱାଧୀନତା ସଂଗ୍ରାମ ଓ ଦେଶମିଶ୍ରଣ ଉପରେ ବହୁବାର ମତଦ୍ୱୈଧ ହେଉଥିଲା ଓ ବ୍ରଜବାବୁଙ୍କ ମଧ୍ୟସ୍ଥତାରେ ତାଙ୍କ ଘରେ ୨ ଜଣ ମହାନାୟକଙ୍କ ମଧ୍ୟରେ ବୁଝାମଣା କରାଯାଉଥିଲା । ମଧୁବାବୁ ୧୯୦୩ ମସିହାରେ ମାଡ୍ରାସ କଂଗେସ ସମ୍ମିଳନୀରେ ଭାରତ ମହାସଭା ସହିତ ସମସ୍ତ ସଂପର୍କ ଛିନ୍ନ କଲେ । କାରଣ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ଗଠନଦାବୀକୁ ଜାତୀୟ ମହାସଭା ସେ ସମୟରେ ଗ୍ରହଣ କରିନଥିଲା । ମଧୁବାବୁଙ୍କ ମତରେ ଓଡିଶା ଗୋଟିଏ ଉପନିବେଶର ଉପନିବେଶ । (Colony of a Colony) ତାରଦାବୀ ସ୍ୱତନ୍ତ୍ର । ତେଣୁ ୧୯୦୩ କଟକ ଇଦଗା ପଡିଆରେ ଉତ୍କଳ ସମ୍ମିଳନୀର ପ୍ରଥମ ସାଧାରଣ ସଭା ଅନୁଷ୍ଠିତ ହେଲା । ବ୍ରଜବାବୁ ଏ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କଲେ । ଆଜୀବନ ସଦସ୍ୟା ରହିଲେ । ନିଜର ନିଷ୍ଠା, ଶ୍ରମ ଓ ଦକ୍ଷତା ବଳରେ ଉତ୍କଳ ସମ୍ମିଳନୀର ସଂପାଦକ ଭାବେ ଦୀର୍ଘଦିନ କାର୍ଯ୍ୟ କରିଥିଲେ । ନିଜ ଜମିଦାରୀର ସମସ୍ତ ଆୟ ଦେଶ ପାଇଁ ଖର୍ଚ୍ଚ କରି ନିଜେ ସରଳ ଜୀବନ ଯାପନକୁ ଗ୍ରହଣ କରିନେଇଥିଲେ । ଉତ୍କଳ ସମ୍ମିଳନୀର ସ୍ୱେଚ୍ଛାସେବୀମାନଙ୍କୁ ସେ ନିଜ ପରିବାରର ଲୋକ ବୋଲି ଭାବୁଥିଲେ । ଉତ୍କଳ ସମ୍ମିଳନୀ ପାଇଁ ଆବଶ୍ୟକ ଅର୍ଥ, ପ୍ରଚାର ପତ୍ର, ପୁସ୍ତିକା, ଦାବୀପତ୍ର ନିଜ ପ୍ରେସ୍‌ରୁ ମାଗଣାରେ ଛପାଇଥିଲେ । ତ୍ୟାଗ ହିଁ । ତ୍ୟାଗ ତାଙ୍କର

ଆଦର୍ଶ । ୧୯୨୮ ମସିହାରେ ଭାରତର ଶାସନ ନୀତି ସମୀକ୍ଷା କରିବା ପାଇଁ ସାଇମନଙ୍କ ଅଧ୍ୟକ୍ଷତାରେ ଏକ କମିଟି ଭାରତକୁ ଅସିଥାନ୍ତି । ସ୍ୱାଧୀନତା ଦେବାରେ ଏହା ଏକ କାଳ କ୍ଷେପଣ ନୀତି ବୋଲି ଜାତୀୟ କଂଗ୍ରେସ ଏହି କମିଶନକୁ ବୟକଟ୍ କରିଥାଏ । ବ୍ରଜବାବୁଙ୍କ ନେତୃତ୍ୱରେ କନିକ । ରାଜାସାହେବ ଓ ରାୟ ବାହାଦୂର ଲକ୍ଷ୍ମୀଧର ବାବୁଙ୍କ ସହାୟତାରେ ଏ କମିଶନଙ୍କ ପାଖରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ଦାବୀ ଉପସ୍ଥାପନ କରାଗଲା । ବ୍ରଜବାବୁ କଂଗେସର ଓ ବୟକଟ ଆନ୍ଦୋଳନ ମଧ୍ୟରେ ବହୁ ପୋଷ୍ଟର । ଦାବୀପତ୍ର ଛପାଇ ପାଟଣା ରେଳ ଷ୍ଟେସନରେ ସାଇମନ ସାହେବଙ୍କୁ ସାକ୍ଷାତ କରିବାପାଇଁ ଏକ ପୃଷ୍ଠଭୂମି ନିର୍ମାଣ କରିଥିଲେ । ସାଇମନ ସାହେବ ପ୍ରଭାବିତ ହେଲେ ଓ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବା ଉଚିତ୍ ବୋଲି ତାଙ୍କ ରିପୋର୍ଟରେ ଉଲ୍ଲେଖ କଲେ । ଏହା ବ୍ରଜବାବୁଙ୍କ ଅନ୍ୟତମ ସଫଳତା । ବିଛିନାଞ୍ଚଳ ଓଡ଼ିଶାରେ ଓଡ଼ିଆ ଭାଷାର ପ୍ରସାର ପାଇଁ ବ୍ରଜବାବୁ ଓ ଗୋପବନ୍ଧୁ ଦାସ ମିଶି ପଇସା ପାଣ୍ଠି (Paisa Fund) ନାମକ ସଂଗଠନ ଗଠନ କରିଥିଲେ ଓ ଦେଶବାସୀଙ୍କୁ ଗୋଟିଏ ପଇସା ଦେବାକୁ ନିବେଦନ କରିଥିଲେ । କ୍ଷୁଦ୍ର ଅଥଚ ମହନୀୟ ସଂଗଠନ ଥିଲା (ପଇସା ପାଣ୍ଠି) ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ପାଇଁ ବ୍ରଜବାବୁଙ୍କ ଅନନ୍ୟ ଚିନ୍ତାଧାରା ଜଣେ ଦକ୍ଷ ବ୍ୟବସ୍ଥାପକ ଭାବେ ତାଙ୍କର ସୁନାମ ଯଥେଷ୍ଟ ଥିଲା । ୧୯୪୫ ଅଗଷ୍ଟ ୧୫ ତାରିଖରେ ଓଡ଼ିଆ ଭାଷା କୋର୍ଟ କଚେରୀର ଭାଷା ହେଉ ବୋଲି ବିଧାନ ସଭାରେ ବିଲ ଆଣିଥିଲେ । ଆସେମ୍ବ୍ଲିରେ ଶିଳ୍ପ ବିକାଶ ନୀତି ସମ୍ବନ୍ଧୀୟ ଆଲୋଚନା ଉଚ୍ଚ ମାନର ଥିଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ୧୯୩୬ ର ଗଠନ ହେବାପରେ ସେ ଓଡ଼ିଆ ସ୍ୱାର୍ଥରକ୍ଷା ସମିତି । ଗଠନ କରି ସଭାପତି ଥିଲେ ଓ ସଂପାଦକ ଥିଲେ ଲାଲମୋହନ ପଟ୍ଟନାୟକ ମେଦିନିପୁର ଅଞ୍ଚଳର ଓଡ଼ିଆମାନଙ୍କୁ ସଂଖ୍ୟା ଠିକ୍‌ଭାବେ ନିରୁପିତ ହେଉ ବୋଲି ଆପ୍ରାଣ ଉଦ୍ୟମ କରିଥିଲେ । କମିଶନର ଲାଟ ଓ ବହୁ ପଦସ୍ଥ ଅଫିସରମାନଙ୍କୁ ଜନଗଣନାର ସଠିକତା ପାଇଁ ବହୁ ଦାବୀପତ୍ର ଦେଇଥିଲେ । ଅବକାଶ ବାହିନୀ ର ଉପଦେଷ୍ଟା ଭାବେ ବହୁ ଶ୍ରମ ତ୍ୟାଗ କରିଥିଲେ । ବାରମ୍ବାର ନିବେଦନ ପତ୍ର ନିଜ ପ୍ରେସ୍‌ରୁ ଛପାଇ ବିଛିନ୍ନାଞ୍ଚଳ ଓଡ଼ିଆମାନଙ୍କ ଜୀବନଯାପନର ସମସ୍ୟା ଲୋକ ମୋଚନକୁ ଆଣିଥିଲେ । ପାଟନା ବିଶ୍ୱବିଦ୍ୟାଳୟର ଫେଲୋ ଓସିଣ୍ଡିକେଟ ସଭ୍ୟ ଭାବରେ ୧୯୧୭ ରୁ ୧୯୨୫ ପର୍ଯ୍ୟନ୍ତ କାର୍ଯ୍ୟକରିଥିଲେ । ୧୯୧୭ ରୁ ୧୯୨୦ ପର୍ଯ୍ୟନ୍ତ ବିହାର ଓଡ଼ିଶା ବିଧାନ ପରିଷଦର ସଭ୍ୟଥିଲେ । ୧୯୧୮ ରୁ ମୃତ୍ୟୁ ଯାଏଁ ସେ ଉତ୍କଳ ସମ୍ମିଳନୀର ସଂପାଦକ ଭାବେ କାର୍ଯ୍ୟ କରିଥିଲେ । ୧୯୨୧ ରୁ ୧୯୨୪ ଯାଏଁ କେନ୍ଦ୍ରୀୟ ପରିଷଦ ଦିଲ୍ଲୀର ସଭ୍ୟଥିଲେ । ରାଷ୍ଟ୍ରିୟ ଓ ପ୍ରାଦେଶିକ ରାଜନୀତି ବ୍ୟତୀତ ସ୍ଥାନୀୟ ରାଜନୀତିରେ

ଓ ସାମାଜିକ କାର୍ଯ୍ୟରେ ସେ ସାମିଲ ଥିଲେ । ୧୯୩୧ ରେ ଯାଜପୁରର ଲୋକାଲ ବୋର୍ଡର ସଦସ୍ୟ ଥିଲେ । କଟକ ମ୍ୟୁନିସିପାଲିଟି, କଟକ ଜିଲ୍ଲା ବୋର୍ଡ, କଟକ ଇଞ୍ଜିନିୟରିଂ କଲେଜ, ମେଡିକାଲ କଲେଜର ପରିଚାଳନା ବୋର୍ଡର ସଦସ୍ୟ ଥିଲେ । ୧୯୩୭ ରୁ ୧୯୪୧ ଓଡିଶା ବିଧାନ ସଭାର ସଭ୍ୟଥିଲେ । ଏହା ବ୍ୟତୀତ .ସାକ୍ଷୀଗୋପାଳ ମନ୍ଦିରର ଟ୍ରଷ୍ଟିଥିଲେ । ନିଜେ ସଂଗୀତଜ୍ଞ ଥିଲେ । ନିଜେ ତବଲା ବଜାଉଥିଲେ ଏବଂ ଓଡିଆରେ ପ୍ରଥମ କରି ସଂଗୀତର ଚିତ୍ରଲିପି ପ୍ରକାଶ କରିଥିଲେ । ୧୯୪୨ ରେ ଓଡିଶା ସଂଗୀତର କ୍ଷେତ୍ରପ୍ରଚାର ଅଧିକାରୀ ଭାବେ କାର୍ଯ୍ୟ କରିଥିଲେ । ମୁକୁର ପ୍ରେସରୁ ସେ ବିଭିନ୍ନ ଦାବୀପତ୍ର ଆବେଦନ / ନିବେଦନ ପତ୍ର ଛପାଇ ବିଭିନ୍ନ ଉଚ୍ଚ ସ୍ତରୀୟ କମିଟି ଆଗରେ ପେଶ କରୁଥିଲେ । ଫ୍ରାନଚାଇଜ କମିଟ୍, ଫିଲପ୍ ଡାଫ କମିଟି, ମଣ୍ଟେଗୁ କମିଟି, ସାଇମନ କମିଶନ ଆଦି ସମେତ ଓଡିଶାର ସୀମା ନିର୍ଦ୍ଧାରଣ ପାଇଁ ବସିଥିବା ଓଡୋନାଲ କମିଟିକୁ ଯଥା ସମ୍ଭବ ମାନପତ୍ର ମାନ ଦେଉଥିଲେ । ଉପରୋକ୍ତ ଲୋକହିତକର କାର୍ଯ୍ୟ ସହିତ ଜାତୀୟ ଆନ୍ଦୋଳନ ସହିତ ମଧ୍ୟ ସଂପୃକ୍ତ ଥିଲେ । ତାଙ୍କ ଦ୍ୱାରା ପ୍ରେରିତ ଗାନ୍ଧିଜୀଙ୍କ ନିକଟକୁ ବିଭିନ୍ନ ପତ୍ରରୁ ଏହା ସ୍ପଷ୍ଟ ସ୍ୱାଧୀନତାର ଭୂମିତଳଗତ ସଶସ୍ତ୍ର ସେନାନୀଙ୍କୁ ସେ ଆଶ୍ରୟ ଦେଇ ନିଜର ଦେଶ ପ୍ରୀତିର ପ୍ରମାଣ ଦେଇଯାଇଛନ୍ତି । ବିପ୍ଳବୀ ଶଶୀଭୂଷଣ ରାୟ ଚୌଧୁରୀ, ଖୁଦିରାମ ବସୁ ପରି ଅନେକଙ୍କୁ ସେ ଆଶ୍ରୟଦେଇ ପୋଲିସ ନଜରରୁ ବଞ୍ଚାଇଛନ୍ତି । ଗୋପବଂଧୁ ଦାଶ, କାମପାଳ ମିଶ୍ର ଓ ବ୍ରଜବାବୁ ମିଶି ହରିଭକ୍ତି ପ୍ରଦାୟିନୀ ଶିକ୍ଷା ବିବର୍ଦ୍ଧନୀ (୧୮୮୪) ଓ ଅବଜରଭର କ୍ଳବ (୧୮୯୬) ରେ ଗଠନ କରି ଗ୍ରାମାଞ୍ଚଳ ଶିକ୍ଷା, ଧର୍ମ ଓ ସଂସ୍କୃତିକୁ କ୍ରିୟାଶୀଳ କରାଇଥିଲେ ।

ଓଡିଆ ଭାଷାକୁ ଯେପରି ନିଷ୍ଠୁର ଭାବେ ହତ୍ୟା କରଯାଉଥିଲା, ସେଥିରୁ ଜନ୍ମ ନେଲା ଭାଷା ସୁରକ୍ଷା ଆନ୍ଦୋଳନ । ଏହାର ଅନ୍ୟତମ ଅଗ୍ରଦୂତ ଭାବେ ବ୍ରଜବାବୁ ୧୯୦୫ ରେ ମୁକୁର ପ୍ରେସ ପ୍ରତିଷ୍ଠା କରିବା ସହିତ ମୁକୁର ନାମକ ପତ୍ରିକା ମଧ୍ୟ ୧୯୦୬ ଅପ୍ରେଲ ପନ୍ଦର ରୁ ପ୍ରକାଶ କଲେ ଓ ନିଜେ ତାହାର ସଂପାଦକ ରହିଲେ । ଏହି ପତ୍ରିକା ମାଧ୍ୟମରେ ଓଡିଶାର କୃତବିଦ୍ୟ ସାହିତ୍ୟରଥି ମାନେ ପ୍ରତିଷ୍ଠା ଲାଭ କରିଥିଲେ । ଜଗବଂଧୁସିଂ, ମୃତ୍ୟୁଞ୍ଜୟ ରଥ, ଗୋପୀନାଥ ନନ୍ଦ ଓ ସତ୍ୟବାଦୀ ଗୋଷ୍ଠୀରୁ ପ୍ରାୟ ସମସ୍ତ ଲେଖକ ଏ ପତ୍ରିକା ମାଧ୍ୟମରେ ପ୍ରତିଭା ପ୍ରଦର୍ଶନ କରିଥିଲେ । ଫକୀର ମୋହନଙ୍କ ଅଧିକାଂଶ ଗଳ୍ପ, ଦାଣ୍ଡୀ ରାମାୟଣର ସମାଲୋଚନା, ନନ୍ଦକିଶୋର ବଳଙ୍କ ପ୍ରବନ୍ଧ, ଗୋପବଂଧୁ ଦାଶଙ୍କ ପ୍ରବନ୍ଧ ମୁକୁରରେ ପ୍ରକାଶ ପାଉଥିଲା । ଫକୀର ମୋହନଙ୍କ ପରେ କଥା ସାହିତ୍ୟକୁ ଗତିଶୀଳ କରିବା ପାଇଁ ବ୍ରଜବାବୁ ମୁକୁର ମାଧ୍ୟମରେ ଗୋଟିଏ ନୂଆ

ଯୋଜନା ହାତକୁ ନେଇଥିଲେ । ସେ ଯୋଜନାର ନାମ ଥିଲା ମୁକୁର ଉପନ୍ୟାସ ମାଳା ।୧୨ ମାସରେ ୧୨ ଖଣ୍ଡ ଉପନ୍ୟାସ ପ୍ରକାଶିତ ହୋଇ ପାଠକମାନଙ୍କୁ ସୁଲଭ ମୂଲ୍ୟରେ ଯୋଗାଇ ଦିଆଯାଉଥିଲା । ମୁକୁର ପ୍ରେସ ତାର ସୁନ୍ଦର ଅକ୍ଷରଛାଞ୍ଚ ପାଇଁ ଓ ପରିଚ୍ଛନ୍ନ ମୁଦ୍ରଣ ଶୈଳୀ ପାଇଁ ଖୁବ୍ ପ୍ରତିଷ୍ଠା ପାଇଥିଲା ।

ମୁକୁର ପ୍ରେସରେ ସାମନ୍ତ ଚନ୍ଦ୍ରଶେଖରଙ୍କ ସିଦ୍ଧାନ୍ତ ଦର୍ପଣ, ଅଭିମନ୍ୟୁ ସାମନ୍ତସିଂହାରଙ୍କ ସୁଲକ୍ଷଣା କାବ୍ୟ ଓ ଫକୀର ମୋହନଙ୍କ ଲଛମା । ଉପନ୍ୟାସ ମଧ ପ୍ରକାଶିତ ହୋଇଥିଲା । ତା ବ୍ୟତୀତ ସେ ଓଡିଆରେ "ସତ୍ୟ ସମାଚାର" ସାପ୍ତାହିକ ପତ୍ରିକା ଓ ଇଂରାଜୀ ପତ୍ରିକା The Oriya ମଧ ପ୍ରକାଶ କରୁଥିଲେ । ଜଣେ ନିଷ୍ଠାପର ପାଠକ ଭାବେ ସେ ନିଜଘରେ ଗୋଟିଏ ଲାଇବ୍ରେରୀ ପ୍ରତିଷ୍ଠା କରି ଯୁବ ଛାତ୍ରମାନଙ୍କୁ ପଢାପଢିରେ ସହାୟତା ଦେଉଥିଲେ । ନିତ୍ୟାନନ୍ଦ ବାବୁଙ୍କୁ ଗୋଟିଏ ବଡ କୋଠରୀ ଓ ଆବଶ୍ୟକୀୟ ଅସବାସ ପତ୍ର ଯୋଗାଇ ଅର୍ଥନୀତି ସମ୍ବନ୍ଧରେ ଏକ ପାଠାଗାର ସ୍ଥାପନ କରିବାରେ ସାହାଯ୍ୟ କରିଥିଲେ ସେ ପାଠାଗାରର ନାମଥିଲା "କଳିଙ୍ଗ ଧନ ବିଜ୍ଞାନ ପରିଷଦ" । ଯେଉଁ ଠାରେ ଓଡିଶାର ଅର୍ଥନୀତିକ ଅବସ୍ଥା ଉପରେ ଆଲୋଚନା ସଭା ମଧ ଅନୁଷ୍ଠିତ ହେଉଥିଲା । ଡ: ହରେକୃଷ୍ଣ ମହତାବଙ୍କ ସହିତ ରାଜନୀତିକ ମତାନ୍ତର ସତ୍ତ୍ୱେ ଆଜିର ଦୈନିକ ପ୍ରଜାତନ୍ତ୍ର ଖବର କାଗଜକୁ ନିଜ ପ୍ରେସରୁ ଛାପିବା ପାଇଁ ସୁଯୋଗ ଦେଇଥିଲେ ।

ଏ ସବୁ ଉର୍ଦ୍ଧ୍ୱରେ ସେ ଜଣେ ସୁଲେଖକ ବିଥିଲେ । ନିଜ ହାତରେ ପ୍ରେସ ଓ ପତ୍ରିକା ଥିବା ସତ୍ତ୍ୱେ ସେ ନବାଗତ ଲେଖକମାନଙ୍କ ଲେଖାକୁ ଅଗ୍ରାଧିକାର ଦେଇ ଛାପୁଥିଲେ । ସେ ସେତେବେଳର ଲେଖକ ମାନଙ୍କୁ ପୃଷ୍ଠାପ୍ରତି ଦୁଇଅଣା /ଚାରିଅଣା କରି ପାରିଶ୍ରମିକ ଦେବାର ମଧ ଶୁଭାରମ୍ଭ କରିଥିଲେ । ଜଣେ ଭକ୍ତି ସଙ୍ଗୀତକାର ଭାବରେ ସେ ଅଜସ୍ର ଲେଖା । ପ୍ରକାଶ କରିଥିଲେ । ଭକ୍ତି ସଙ୍ଗୀତ, ଜାତୀୟ ଚେତନା ବର୍ଦ୍ଧକ କବିତା ମଧ ମଧୁବାବୁଙ୍କ ଅନୁସରଣରେ ଲେଖୁଥିଲେ । ଅତୀତ ଉତ୍କଳର ଗୌରବ ଓ ସେ ଗୌରବ ଗାଥାରୁ ଆଜିର ଉତ୍କଳୀୟ କିପରି ପ୍ରେରଣା ଲାଭ କରିବେ ତାହା ଥିଲା ତାଙ୍କ କବିତାର ମୂଲ୍ୟବୋଧ ।

ତାର ଯଶରାଶି ସୌରଭ ବିକାଶ
ଜନମନ ହାରୁଥିଲା ଭାରତ ମଣ୍ଡଳେ
ଯା ସ୍ମୃତି ପୁରାଣ କାବ୍ୟ ଉପାଖ୍ୟାନ
ଅମୂଲ୍ୟ ରତନ ମାଳା ବୀଣାପାଣି ଗଳେ

କି ଥିଲା କି ହେଲା ଆଜି-କାଲି କବକେ ।

ଏ କବିତାର ମୂଲ୍ୟ ସେତେବେଳେ ଖୁବ୍ ଉତ୍ସାହପ୍ରଦ ଥିଲା ଈଶ୍ୱରଙ୍କ ରୂପରେଖ, ପ୍ରତିମାପୂଜା ଆଧ୍ୟାତ୍ମିକ ଭାବନା ଭାଗ୍ୟଲିପି, କର୍ମଫଳ ଇତ୍ୟାଦି ତାଙ୍କ ଭକ୍ତି ସଂଗୀତର ପ୍ରାଣ । ଖୁବ୍ ତର୍କ ସଂଗତ ଲେଖା ତାଙ୍କର

ଯଦି ଇଚ୍ଛାମୟ ଇଚ୍ଛାରେ ଚଳଇ
ମୋର ଅପରାଧ କାହିଁକି ?
ପଡି ଯୁକ୍ତିତର୍କ ଗୋଲକ ଧନ୍ଦାରେ
କେହି କେବେ ବାଟ ପାଏକି ?

ସେ ବୈଷ୍ଣବଥିଲେ । ବୈଷ୍ଣବ ସୁଲଭ ନମ୍ରତ । ହିଁ ତାଙ୍କ ଲେଖାରେ ସର୍ବଦା ପ୍ରତିଫଳିତ । ସରଳ ଅମାୟିକ, ସ୍ଥିତପ୍ରଜ୍ଞ ବ୍ରଜବାବୁ ଜୀବନ ଦର୍ଶନ ଖୁବ ମର୍ମସ୍ପର୍ଶୀ, ନୀତିକଥା ମଧ କବିତାର ପ୍ରାଣ। "ପ୍ରଗଳ୍ଭତା ନୁହେଁ ପାଣ୍ଡିତ୍ୟ ଲକ୍ଷଣ ।

ବତାସ ନୁହଁଇ ବରଷାର ଚିହ୍ନ ।

"ମାଧବୀ ଦାସୀ" ତାଙ୍କର ସର୍ବୋତ୍କୃଷ୍ଟ ଗଦ୍ୟ ରଚନା, ମଧୁବାବୁଙ୍କ ଜାତୀୟ ଭାବାପନ୍ନ କବିତା ପୁସ୍ତିକା ସେ ପ୍ରକାଶ କରି ବାଣ୍ଟୁଥିଲେ । ଦେଶପାଇଁ ଯାହା ଯେତେବେଳେ ଦରକାର ସେ କରୁଥିଲେ । ଧନ ଅର୍ଜନ, ଜମିଦାରୀର ମୋହ ତାଙ୍କୁ ସ୍ପର୍ଶ କରିନଥିଲ । ଦେଶପାଇଁ ସେ ଜମିଦାରୀକୁ ବହୁ ସମୟରେ ଅବହେଳା କରିବା ଦ୍ୱାରା ତାଙ୍କ ଜମିଦାରୀ ଏକାଧିକବାର କୋର୍ଟ ଅଫ ୱାର୍ଡସ ହୋଇଯାଇଥିଲା ।

ମୋଟ ଉପରେ ବ୍ରଜବାବୁ ଆଜୀବନ ଦେଶସେବା ଓ ସାହିତ୍ୟ ସେବାରେ ସମୟ କଟାଇଥିଲେ । ଉତ୍କଳମଣି ଓ ଉତ୍କଳଗୌରବଙ୍କ ଅତି ନିକଟତର ଥିଲେ । ଏ ଜାତି ତାଙ୍କ ନିକଟରେ ସର୍ବଦା ଋଣୀ ହୋଇ ରହିବ । ଏହା କୁସୁମ ପରଶେ ପଟ୍ଟ ନିସ୍ତରେ ନ୍ୟାୟରେ ନୁହେଁ । ବରଂ ତାଙ୍କର ତ୍ୟାଗ ପାଇଁ ସ୍ୱକୀୟତା ପାଇଁ ନିଷ୍ଠାପାଇଁ ଓ ଉଚ୍ଚାଦର୍ଶ ପାଇଁ ।୧ ୯୩୬ ଅପ୍ରେଲ ପହିଲାରେ ଆମକୁ ମିଳିଥିବା ଓଡିଶା ପ୍ରଦେଶ ସେ ମହାରଥିଙ୍କ ତ୍ୟାଗର ଫଳ । ବ୍ରଜବାବୁ ଓଡିଆ ଓ ଓଡିଶା ପାଇଁ ଏକ ଅବିସ୍ମରଣୀୟ ବ୍ୟକ୍ତିତ୍ୱ

ସହାୟକ ଗ୍ରନ୍ଥ :

୧. ଦେଶ ପ୍ରାଣ ବ୍ରଜସୁନ୍ଦର - ସଂପାଦକ ପଠାଣୀ ପଟ୍ଟନାୟକ ୧୯୮୩
୨. ହେ ସାଥି ! ହେ ସାରଥି - ନିତ୍ୟାନନ୍ଦ ଶତପଥୀ ।
୩. ମୋ ବାରବୁଲା ଜୀବନ - ଲକ୍ଷ୍ମୀ ନାରାୟଣ ସାହୁ ।
୪. ଅର୍ଦ୍ଧ ଶତାବ୍ଦୀର ଓଡିଶା ଓ ତହିଁରେ ମୋ ସ୍ଥାନ - ଗୋଦବରୀଶ ମିଶ୍ର

୫.	ଶତାବ୍ଦୀର ସୂର୍ଯ୍ୟ - ସୁରେନ୍ଦ୍ର ମହାନ୍ତି ।
୬.	ବ୍ରଜସୁନ୍ଦର ସ୍ମରକୀଗ୍ରନ୍ଥ - ଉତ୍କଳ ସାହିତ୍ୟ ସମାଜ
ଜାନକୀ ବଲ୍ଲଭ ମହାନ୍ତି
୭.	ଆଧୁନିକ ଓଡିଆ ସାହିତ୍ୟ - ଜାନକୀ ବଲ୍ଲଭ ମହାନ୍ତି ।
୮.	ଆଧୁନିକ ଓଡିଆ ସାହିତ୍ୟର ଇତିହାସ - ଡଃ ନଟବର ସାମନ୍ତରାୟ



# ପ୍ରାବନ୍ଧିକ ଓ ଗବେଷକ : ବିରୁପାକ୍ଷ କର

ଯେଉଁ ସମୟରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ, ଓଡିଆ ଭାଷା ସୁରକ୍ଷା ପାଇଁ, ଏ ମାଟିର ଶିକ୍ଷିତ ଓଡିଆ ମାନେ ଆପ୍ରାଣ ଉଦ୍ୟମ କରୁଥିଲେ, ସେ ସମୟରେ ଆମ ଐତିହ୍ୟ, ସଂସ୍କୃତି, ପରଂପରା, ଇତିହାସ ଆଦିର ବିଶ୍ଳେଷଣ କରିବାକୁ ସୁଯୋଗ ବିଶେଷ ନଥିଲା କି ବଳବତୀ ଇଛାନଥିଲା । ସେତେବେଳେ ଓଡିଶାର ବିଧିବଦ୍ଧ ଇତିହାସ ରଚନା ହୋଇନଥାଏ । ବିଦେଶୀ ମାନେ ଓଡିଶାର ଇତିହାସ ଲେଖିବା ପାଇଁ ଉଦ୍ୟମ ଆରମ୍ଭ କରିଥିଲେ । ସେମାନଙ୍କ ପାଖରେ ମାଦଳାପାଞ୍ଜି ଖଣ୍ଡେ ୨ ଖଣ୍ଡ ତମ୍ବାପତ୍ର ସନନ୍ଦ କିଛି ସରକାରୀ ନଥିପତ୍ର ବ୍ୟତୀତ ଅନ୍ୟ ଉପାଦାନ ନାହିଁ । ଲୋକକଥା, ସାହିତ୍ୟ, ଜନଶ୍ରୁତିରୁ ଇତିହାସ ସଂଗ୍ରହ କରିବାକୁ ହେବ । ଇତିହାସ ଗବେଷଣା କ୍ଷେତ୍ରର ଏଭଳି ସଂକଟ କିଛି ଶିକ୍ଷିତ ବ୍ୟକ୍ତିଙ୍କୁ ମର୍ମାହତ କରିଥିଲା । ଆମର ସଂସ୍କୃତି, ଧର୍ମ ସମ୍ବନ୍ଧରେ ବିଶେଷ ଅଭିଜ୍ଞତା ନଥିଲା ବାଲାଙ୍କ ଠାରୁ ଇତିହାସ ପ୍ରକାଶିତ ହେବ । ଗବେଷଣା ପାଇଁ ସୁଯୋଗ କମ୍ ଅନେକ ସମସ୍ୟା ଘେରରେ ଓଡିଆ ଭାଷା ଓ ଓଡିଶା । ଅଜସ୍ର ପଦ୍ୟଲେଖା ସମ୍ଭାରରେ ଓଡିଆ ସାହିତ୍ୟ ଭାରକ୍ରାନ୍ତ ଗଦ୍ୟ ଲେଖାର ଘୋର ଅଭାବ । ପାଠ୍ୟପୁସ୍ତକ ଖାତିରିରେ ଯାହା ଯେପରି ଗଦ୍ୟଲେଖା ଆରମ୍ଭ । ଫକୀର ମୋହନ, ମଧୁରାଓ ରାମଶଙ୍କର, ଗୌରୀଶଙ୍କର ଆଦିଙ୍କ ପରି ମୁଷ୍ଟିମେୟ ଲେଖକ ଏ କ୍ଷେତ୍ରରେ ଯତ୍ନଶୀଳ, ଗବେଷଣାତ୍ମକ ପ୍ରବନ୍ଧ, ଚିନ୍ତାମୂଳକ ପ୍ରବନ୍ଧ ସଂଖ୍ୟା ବହୁତ କମ୍ । ସେ ସମୟ ରେ ଯେଉଁ କେତେଜଣ କୃତବିଦ୍ୟ ଚିନ୍ତାନାୟକ ଗବେଷଣା କ୍ଷେତ୍ର କୁ ଓହ୍ଲାଇ ଆସି ପ୍ରବନ୍ଧ ସାହିତ୍ୟ କୁ ଋଦ୍ଧିମନ୍ତ କରିଥିଲେ ସେମାନଙ୍କ ମଧ୍ୟରୁ ବିରୁପାକ୍ଷ କର କୁ ଏ ଭାଷା ସବୁଦିନେ ମନେରଖିବ ।

ଅଭିଭକ୍ତ କଟକ ଜିଲ୍ଲାର ବାଙ୍କୀ ଅଂଚଳର ସୁପ୍ରାଚୀନ ଡମପଡାଗଡରେ ସେପ୍ଟେମ୍ବର ୧୫ ତାରିଖ ୧୮୯୩ ଖ୍ରୀଷ୍ଟାବ୍ଦରେ ବିରୁପାକ୍ଷକରଙ୍କ ଜନ୍ମ । ଡମପଡାଗଡର ମଧୁମୟ ପ୍ରକୃତି, ମହାନଦୀ ଉପକୂଳର ବିପୁଳ ପ୍ରାକୃତିକ ସମ୍ଭାର ମଧ୍ୟରେ ବାଲ୍ୟକାଳ ତାଙ୍କର ଅତିବାହିତ ହୋଇଥିଲା । ସତେ ଯେପରି ଡମପଡାଗଡର ମାଧୁର୍ଯ୍ୟ ଶିଶୁ ବିରୁପାକ୍ଷ କରଙ୍କୁ ଅନୁସନ୍ଧିତ୍ସୁ କରିଦେଇଥିଲା ତାଙ୍କ ଅଗ୍ରଜ ଚିନ୍ତାମଣି କର ଜଣେ ପ୍ରଖ୍ୟାତ ଶିକ୍ଷକ ଥିଲେ । ତାଙ୍କ ଅଭିଭାବକତ୍ୱରେ ବିରୁପାକ୍ଷ କର ତାଙ୍କ ପ୍ରାଥମିକ ଶିକ୍ଷା ବାଙ୍କୀ ଠାରେ ଲାଭ କରିଥିଲେ । ୧୯୦୮ ମସିହାରେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିଲା ବେଳେ ସେଠାକାର ପ୍ରସିଦ୍ଧ ଶିକ୍ଷକ କବି, ପ୍ରାବନ୍ଧିକ ବିଦ୍ୟାବିନୋଦ ମଧୁସୂଦନ ଦାସଙ୍କ ପ୍ରତ୍ୟକ୍ଷ ସାନିଧ୍ୟରେ

ଆସିଥିଲେ ସେ ୧୯୧୨ ମସିହାରେ ପ୍ରଥମ ଶ୍ରେଣୀ ଲାଭ କରି କୃତିତ୍ୱ ର ସହିତ ମ୍ୟାଟ୍ରିକ ପରୀକ୍ଷାରେ ଉତ୍ତିର୍ଣ୍ଣ ହୋଇଥିଲେ , ଓ ୧୯୧୬ ମସିହାରେ କଳିକତାରୁ ଡିଷ୍ଟିଙ୍ଗସନ୍ ସହିତ ବିଏ ପରୀକ୍ଷାରେ ଉତ୍ତିର୍ଣ୍ଣ ହୋଇ ଆଇନ ଅଧ୍ୟୟନ କରିଥିଲେ । ଛାତ୍ର ଅବସ୍ଥାରେ ଇତିହାସ ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା ଧର୍ମ-ସାହିତ୍ୟ-ସମାଜ ପ୍ରତି ତାଙ୍କର ଧାରଣା ଖୁବ୍ ସ୍ୱଷ୍ଟ ଥିଲା ପାଠପଢା ପରେ ସେ ମଧୁପୁର ରାଜ୍ୟର ଦେଓ୍ୱାନ ଭାବେ କିଛିଦିନ କାର୍ଯ୍ୟ କରିଥିଲେ । ଦେଓ୍ୱାନ ଭାବେ କେଶ୍ କଚେରୀ କାମ ପାଇଁ ଓଡିଶା ର ବିଭିନ୍ନ ଅଂଚଳ ପରିଭ୍ରମଣର ସୁଯୋଗ ପାଇବା ସହିତ ଯାଜପୁର କଚେରୀ କୁ ବହୁବାର ଆସିବାକୁ ପଡୁଥିଲା । ଯାଜପୁର ର ମୂର୍ତ୍ତିକଳା, ମନ୍ଦିର, ଐତିହ୍ୟ ଓ ସୁପ୍ରାଚୀନ କୀର୍ତ୍ତିରାଜି ତାଙ୍କ ଦୃଷ୍ଟି ପଥାରୁଢ ହେବା ସ୍ୱଭାବିକ । ଯାଜପୁର ସଂସ୍କୃତି ପ୍ରେମ ରେ ସେ ଏପରି ପ୍ରଲୁବ୍ଧ ହୋଇ ଯାଇଥିଲେଯେ, ଦେଓ୍ୱାନ ଚାକିରୀ ପରିତ୍ୟାଗ କରି ଯାଜପୁର କଚେରୀ ରେ ଜଣେ ଆଇନଜୀବୀ ବ୍ୟବସାୟଙ୍କୁ ଆଦର ରେ ଗ୍ରହଣ କରିବା ସହିତ ଯାଜପୁରର ସ୍ଥାୟୀ ବାସିନ୍ଦା ହୋଇ ଯାଇଥିଲେ । ଓଡିଶା ଇତିହାସ ରେ ଯାଜପୁର ସ୍ଥାନ ନିରୁପଣ କରିବା କାର୍ଯ୍ୟ ସହିତ ଏହାର ଶୈକ୍ଷିକ ଓ ସାଂସ୍କୃତିକ ଉନ୍ନତି ପାଇଁ ମନନିବେଶ କରିଦେଇଥିଲେ । ଯାଜପୁର ମୂଲ୍ୟବାନ ସଂସ୍କୃତି କୁ ଲୋକଲୋଚନ କୁ ଆଣିବା ସହିତ ପ୍ରାଚୀନ କୀର୍ତ୍ତିରାଜିର ସୁରକ୍ଷା, ଧାରବାହିକ ଇତିହାସ ରଚନା ପାଇଁ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଯଦିଓ ଓକିଲାତି ଥିଲା ତାଙ୍କର ପେଷା କିନ୍ତୁ ଇତିହାସ ଓ ସାହିତ୍ୟ ଥିଲା ତାଙ୍କର ନିଶା ଯାଜପୁରର ଶୈକ୍ଷିକ ବିକାଶ କ୍ଷେତ୍ର ରେ ତାଙ୍କ ଅବଦାନ ଅବିସ୍ମରଣୀୟ । ନରସିଂହ ଚୌଧୁରୀ କଲେଜ ପ୍ରତିଷ୍ଠା ସହିତ ଜଡିତ ହେବା ଓ ଏହାକୁ ଏକ ସରକାରୀ ଅନୁଷ୍ଠାନ ରେ ପରିଣତ କରିବା କ୍ଷେତ୍ରରେ ସେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଯାଜପୁର ପରି ମନ୍ଦିରମାଳିନୀ ସହର ଆଖପାଖ ରେ ବିକ୍ଷିପ୍ତ ହୋଇ ପଡିଥିବା । ଅମୂଲ୍ୟ ପ୍ରାଚୀନ ମୂର୍ତ୍ତି, ଭଗ୍ନ ମନ୍ଦିର ଆଦିର ସୁରକ୍ଷା ଓ ସଂରକ୍ଷଣ ପାଇଁ ସେ ବାରମ୍ବାର ସରକାର ଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । କିନ୍ତୁ ସଫଳତା ମଧ ଅର୍ଜନ କରିଥିଲେ । ଏଠାକାର ମୂର୍ତ୍ତି ଓ ମନ୍ଦିରର ବର୍ଗୀକରଣ କରି ତାହାର ତାଲିକା ସରକାରୀ ନଥିପତ୍ର ରେ ସାମିଲ କରାଇ ପାରିଥିଲେ । ପୂରାଣ, ଧର୍ମଶାସ୍ତ୍ର, ଲୋକକଥା, କିମ୍ବଦନ୍ତୀ, ଶିଳାଲେଖ ତମ୍ବାପତ୍ର ସନନ୍ଦରୁ ସେ ସର୍ବପ୍ରଥମେ ଯାଜପୁର ମାଟି ପାଇଁ ଇତିହାସ ସଂଗ୍ରହ କରିବାର ପ୍ରଥମ ପ୍ରୟାସ କରିଥିଲେ । ତାଙ୍କର ମନନଶୀଳତା, ଅର୍ନ୍ତଦୃଷ୍ଟି ଓ ପ୍ରଜ୍ଞା ପ୍ରଖର ଥିଲା । ଯାଜପୁର ସଂସ୍କୃତିକୁ ଉତ୍କଳର ପ୍ରାଚୀନ ସଂସ୍କୃତି ଭାବେ ପ୍ରତିପାଦନ କରିବାସହ , ମା ବିରଜାଙ୍କୁ ଶକ୍ତି ପରଂପରାର ଆଦ୍ୟ ଦେବୀ ଭାବେ ଉପସ୍ଥାପନା କରିବାକୁ ସେ ପ୍ରବନ୍ଧ ଗୁଡିକ ମଧ୍ୟରେ ଚେଷ୍ଟା କରିଛନ୍ତି ।

ଇତିହାସ୍ ର ଧାରାବାହିକ, ତର୍କସଂଗତ ଓ ବୈଜ୍ଞାନିକ ଧାରେରେ ବିଶ୍ଳେଷଣ କରିବାରେ ସେ ଅଗ୍ରଦୂତ ।

ଯଦିଓ ବିରୁପାକ୍ଷ କର ଆମ ପାଇଁ ବିପୁଳ ସାରସ୍ୱତ ସଂପଦ ଛାଡି ଦେଇ ନାହାନ୍ତି, କିନ୍ତୁ ଅଳ୍ପ ରେ ଯାହାସବୁ ଲେଖି ଯାଇଛନ୍ତି ତାହା ଅମୂଲ୍ୟ, ତାଙ୍କ ର ପୌରାଣିକ ଓ ଐତିହାସିକ ପ୍ରବନ୍ଧାବଳୀ ରେ ୪ର୍ଥ ଶତାବ୍ଦୀ ଗୁପ୍ତଯୁଗ ଠାରୁ ୫ମ ଶତାବ୍ଦୀ ଯାଏଁ ଏ ମାଟିରେ ପ୍ରଲମ୍ବିତ ବ୍ରାହ୍ମଣୀ ଧର୍ମ ପ୍ରାଧାନ୍ୟ ସୂଚନା ଦେଇଛନ୍ତି । ତାଙ୍କର ମୂଲ୍ୟବାନ ୩ଟି ନିବନ୍ଧରୁ ଏହାର ପରିଚୟ ମିଳେ । ପ୍ରାଚୀନ ଉତ୍କଳରେ ଜଳଯାତ୍ରା , କେଶରୀ ବଂଶ ଓ ବୌଦ୍ଧ ଯୁଗରେ ଓଡିଶାର ଇତିହାସ ଆଦିରେ ସେ ବେଦ, ଉପନିଷଦ, ପୁରାଣ, ପରିବ୍ରାଜକ ହୁଏନ୍‌ସାଂ ଓ ପାଂହିୟାନ ଙ୍କ ବିବରଣୀ ଐତିହାସିକ ପତ୍ରପତ୍ରିକା, ଆଦିକୁ ମନ୍ଥନ କରି ବହୁ ମୂଲ୍ୟବାନ ତଥ୍ୟ ଉପସ୍ଥାପନ କରିଛନ୍ତି । ଏ ପ୍ରବନ୍ଧ ଗୁଡିକ ରେ ଉଡ୍ର - କଳିଙ୍ଗ - କୋଶଳ କୋଙ୍ଗଦ - ଉତ୍କଳ ଆଦିର ବିକାଶ ଓ ପ୍ରକାଶ ସମ୍ବନ୍ଧରେ ସ୍ପଷ୍ଟ ଧାରଣା ଦେଇଛନ୍ତି । ନିଜେ ମାନଚିତ୍ର ଆଙ୍କି ବିଭିନ୍ନ ସମୟରେ ଓଡିଶା ର ଭୌଗୋଳିକ ସୀମା ସରହଦ ସମ୍ବନ୍ଧ ରେ ପାଠକ ମାନଙ୍କୁ ସ୍ପଷ୍ଟ କରିଛନ୍ତି । ସେ ଆମ ସମାଜର ଜାତିବ୍ୟବସ୍ଥା ର ମୂଳ ଓ ମୌଳିକ ତତ୍ତ୍ୱ ନିରୁପଣ କରିବାକୁ ତାଙ୍କ ଜାତିବିଚାର ପ୍ରବନ୍ଧ ରେ ଆଲୋକ ପାତ କରିଛନ୍ତି । ଜାତିବ୍ୟବସ୍ଥା ର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ଏହି ବ୍ୟବସ୍ଥାର ବୈଜ୍ଞାନିକ ବିଚାରଧାରା କୁ ଆଚ୍ଛନ୍ନ କରିରଖିଥିବା ଅନ୍ଧବିଶ୍ୱାସ ଓ କୁସଂସ୍କାର ସମ୍ବନ୍ଧରେ ମତ ପ୍ରଦାନ କରିଛନ୍ତି । ସମଗ୍ର ମାନବ ଜାତି କୁ ଉଦାର ହୃଦୟ ରେ ଏ ପ୍ରଥାର ଉପାଦେୟତା କୁ ଗ୍ରହଣ କରିବାକୁ ପରାମର୍ଶ ଦେଇଛନ୍ତି । ତତ୍‌କାଳୀନ ମୁଖ୍ୟ ସାହିତ୍ୟ ପତ୍ରିକା, ଉତ୍କଳ ସାହିତ୍ୟ ପ୍ରାଚୀ, ସତ୍ୟବାଦୀ ରେ ତାଙ୍କ ଗବେଷଣାତ୍ମକ ଲେଖା ଗୁଡିକ ପ୍ରକାଶ ପାଇଥିଲା, ତାଙ୍କ ପ୍ରସିଦ୍ଧ ପ୍ରବନ୍ଧ ମାନଙ୍କ ମଧ୍ୟରେ ୧ ଉତ୍କଳରେ ବୌଦ୍ଧଯୁଗର ଇତିହାସ ୨ ପ୍ରାଚୀନ ଉତ୍କଳରେ ଜଳଯାତ୍ରା ୩ - କେଶରୀ ବଂଶ ୪ - ପ୍ରାଚୀନ ଯାଜପୁର ୫ ଗଜସିଂହ ଓ କେଶରୀବଂଶ, ଆମ ସଂସ୍କୃତି ୭ ମାଘ ଅମାବାସ୍ୟା, ୮ ସରସ୍ୱତୀ ପୂଜା ୯ ଜାତିବିଚାର ଆଦି ମଧ୍ୟରୁ ଉତ୍କଳ ରେ ଜଳଯାତ୍ରା ପ୍ରକାଶ ପାଇଁ ଖୁବ୍ ପ୍ରଶଂସିତ ହୋଇଥିଲା ହିନ୍ଦୋଳ ପୁରସ୍କାର ପାଇଁ ଉତ୍କଳରେ ବୌଦ୍ଧଯୁଗର ଇତିହାସ ନିବନ୍ଧ ଟି ଯୋଗ୍ୟ ବିବେଚିତ ହୋଇଥିଲା ।

ବିରୁପାକ୍ଷ କର ଙ୍କ ଦୀର୍ଘ ପ୍ରବନ୍ଧ ଗୁଡିକ ମଧ୍ୟରୁ ପ୍ରାଚୀନ ଉତ୍କଳର ଜଳଯାତ୍ରା, ଏକ ଗବେଷଣାତ୍ମକ ନିବନ୍ଧ । ଛୋଟ ଛୋଟ କଥାରୁ ଇତିହାସ ସାଉଁଟି ନେବା କଳାରେ ସେ ଧୂରନ୍ଧର ଥିଲେ । ପ୍ରାଚୀନ ଓଡିଆ ଙ୍କ ସଂସ୍କୃତ କାବ୍ୟ, କବିକର୍ଣ୍ଣ ଙ୍କ ସତ୍ୟପୀର ପାଲା, ଲୋକକଥା, ଢଗଢମାଳୀ, ପର୍ବପର୍ବାଣୀ ଜନଶ୍ରୁତି, କିମ୍ବଦନ୍ତୀ ସବୁ ଗୁଡିକ ମଧ୍ୟରୁ ଇତିହାସ

ଆବିଷ୍କାର କରି ଏ ନିବନ୍ଧ ରେ ପ୍ରୟୋଗ କରିଛନ୍ତି । ପ୍ରାଚୀନ ଉତ୍କଳରେ ଜଳଯାତ୍ରା ନିବନ୍ଧ ର ସହାୟକ ଗ୍ରନ୍ଥ ସୂଚୀ (Bibliography) ରେ ଯେଉଁ ଦୀର୍ଘ ତାଲିକା ପ୍ରଦାନ କରିଛନ୍ତି ତାହା ଗବେଷକ ମାନଙ୍କ ପାଇଁ ସବୁଦିନେ ଆଦର୍ଶ ସ୍ଥାନୀୟ । ତାଙ୍କର ଏହି ପ୍ରସିଦ୍ଧ ପ୍ରବନ୍ଧ ଟି ୧୯୨୫ ମସିହାରେ ଉତ୍କଳ ସାହିତ୍ୟ ପ୍ରେସ ରେ ବାଗ୍ମୀ ବିଶ୍ୱନାଥ କର ଙ୍କ ଦ୍ୱାରା ମୁଦ୍ରିତ ହୋଇଥିଲା । ଏହା ମଧୁପୁର ଦୁର୍ଗାଧୀଶ୍ୱର ଶ୍ରୀ ବୀରବର ନାରାୟଣ ଚନ୍ଦ୍ର ଧୀର ନରେନ୍ଦ୍ର ମହୋଦୟଙ୍କ କରକମଳ ରେ ଉତ୍ସର୍ଗୀକୃତ । ଏହା ପ୍ରକାଶ ପାଇବା ପୂର୍ବରୁ ଉତ୍କଳ ସାହିତ୍ୟ ସମାଜର ଏକ ଅଧିବେସନରେ ଆଲୋଚିତ ହୋଇଥିଲା । ଏ ଆଲୋଚନାରୁ ଲେଖକ କିଛି ଅଭାବ ରହି ଯାଉଛି ବୋଲି ଅନୁଭବ କରି ପରବର୍ତ୍ତୀ କାଳରେ ଉତ୍କଳ - ଉଡ୍ର କୋଶଳ - କଳିଙ୍ଗର ନାମ ଓ ସୀମା ସରହଦ ସମ୍ବନ୍ଧ ରେ ସୁଚିନ୍ତିତ ଆଲୋଚନା ସଂଯୋଗ କରିବା ସହିତ, ୨ ଖଣ୍ଡ ମାନଚିତ୍ର ମଧ ଉପସ୍ଥାପନ କରି ବିଷୟ ବସ୍ତୁକୁ ଅଧିକ ସ୍ପଷ୍ଟ କରିବାକୁ ଚେଷ୍ଟା କରିଛନ୍ତି । ଏ ପୁସ୍ତିକା ଟି ବିରୁପାକ୍ଷ ମାନସର ମନନ, ଚିନ୍ତନ ଓ ତର୍କସଂଗତ ଅନୁଶୀଳନର ଏକ ଅଭ୍ରାନ୍ତ ନମୁନା ।

ଉତ୍କଳରେ ବୌଦ୍ଧଯୁଗର ଇତିହାସ, ପ୍ରାଚୀନ ଯାଜପୁର, କେଶରୀ ବଂଶ ଆଦି ଐତିହାସିକ ପ୍ରବନ୍ଧ ରେ ସେ ତାଙ୍କ ଗବେଷଣା ଲବ୍ଧ ଜ୍ଞାନ ଓ ବିଶ୍ଳେଷଣ ଶକ୍ତିର ଅପୂର୍ବ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

ଆମ ସଂସ୍କୃତି, ପ୍ରବନ୍ଧ ରେ ସେ ଆମ ସଂସ୍କୃତିର ସଂଜ୍ଞା ଓ ସ୍ୱରୁପ ନିରୁପଣ କରିବା ସହିତ, ଏହାର କ୍ରମ ବିବର୍ତ୍ତନ ର ଧାର ଉପଧାରା ଉପରେ ଗୁରୁତ୍ୱ ଦେଇଛନ୍ତି । ଗାନ୍ଧିଜୀଙ୍କ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟକ୍ରମ କୁ ଅଧିକ ତର୍କସଂଗତ କରିବାକୁ ବିଭିନ୍ନ ଯୁକ୍ତି ଉପସ୍ଥାପନ କରିବା ସହିତ ସର୍ବଧର୍ମ ବର୍ଣ୍ଣ - ଜାତି ଏକ ଓ ଅଭିନ୍ନ ବୋଲି ଏକ ଋଚିପୂର୍ଣ୍ଣ ସିଦ୍ଧାନ୍ତ ରେ ଉପନୀତ ହୋଇଛନ୍ତି । ତତ୍କାଳୀନ ଖଣ୍ଡାୟତ ଓ ଗୋପାଳ ବିବାଦ ମଧ ପ୍ରବନ୍ଧରେ ସୂଚିତ ହୋଇ ସଂହତି ରକ୍ଷା କରିବା ପାଇଁ ନିବେଦନ କରାଯାଉଛି । ତାଙ୍କ ଭାଷାରେ ଁ ଆମ ସମାଜର ଯେଉଁ ଜାତି ବିଦ୍ୱେଷ ଭାରତକୁ ଛିନ୍ନଭିନ୍ନ କରୁଅଛି, ତାହାର ମୂଳ ଆମ୍ଭମାନଙ୍କର ଅବିବେକିତା । "ଆମ୍ଭ ମାନଙ୍କୁ ଶାସ୍ତ୍ର ଓ ପୁରାଣ ସବୁ ସତ୍ୟ । ଆମ୍ଭେମାନେ ସେଗୁଡ଼ିକର ପ୍ରକୃତ ଅର୍ଥ ନ ବୁଝି, ଆଜି ଯେଉଁମାନେ ଶାସ୍ତ୍ର ପୁରାଣ ର ଦୁହାଇ ଦେଇ ବୃଥାଭିମାନରେ ପରସ୍ପର କୁ ଘୃଣା କରନ୍ତି ସେମାନେ ସେହି ପୁରଣ ଶାସ୍ତ୍ର ଆଦିକୁ, ସୁଚିନ୍ତିତ ଭାବେ ବୁଝନ୍ତୁ, ଦେଖିବେ ଆମ ସମାଜର ସବୁ ଜାତିର ଲୋକ ଏକ ଜାତି ର ଅନ୍ତର୍ଗତ ଓ ପ୍ରକୃତତଃ ଭେଦଭାବ ବିହୀନ । ଈଶ୍ୱର କରନ୍ତୁ ଶୀଘ୍ର ଆମ୍ଭ ମାନଙ୍କର ସେହି ସୁଚିନ୍ତା ଆସୁ" । ଶାସ୍ତ୍ର ଅଧ୍ୟୟନ ବେଳେ ଇତିହାସ ଓ ବିଜ୍ଞାନ ଚେତନା ରେ ଉଦ୍‌ବୃଦ୍ଧ

ହୋଇ ଅଧ୍ୟୟନ କରିବାକୁ ପରାମର୍ଶ ଦେଇଛନ୍ତି । ତାଙ୍କ ସବୁ ପ୍ରବନ୍ଧରେ ଐତିହାସିକ ସତ୍ୟ କୁ ପରଶି ଦେବାର ଅଭିପ୍ରାୟ ସ୍ପଷ୍ଟ । କେଶରୀ ବଂଶ ଓ ଗଜସିଂହ-ପ୍ରବନ୍ଧରେ ଗଜସିଂହ ମୂର୍ତ୍ତିରୁ ଇତିହାସ ଅନ୍ୱେଷଣ କରିବା ଆବେଗ ଲକ୍ଷଣୀୟ । ଇଂରାଜୀ ରେ (Veraja) ନାମକ ପ୍ରବନ୍ଧ ଲେଖିଥିଲେ ଓ ଗୋପବଂଧୁ ସମ୍ପର୍କରେ ପ୍ରବନ୍ଧରେ ଉତ୍କଳମଣିଙ୍କ କୃତିକୁ ସ୍ୱାମୀ ବିବେକାନନ୍ଦଙ୍କ ଆଦର୍ଶର ଏକ ପ୍ରତିଫଳନ ବୋଲି ଦର୍ଶାଇଛନ୍ତି

ସେ ଜଣେ କବି ମଧ୍ୟଥିଲେ । ବୈତରଣୀ, ମଥୁରା ବିଜୟ, ଷଟଶକ୍ତି ଖୁବ୍ ଲୋକପ୍ରିୟ, ଅତୀତ ଉତ୍କଳର ସୁଖଦୁଃଖ, ଆଦିର ମର୍ମସ୍ପର୍ଶୀବାଣୀ ତାଙ୍କ ବୈତରଣୀ କବିତା ରେ ପ୍ରକାଶ ପାଇଛି । ଓଡିଶାର ଶେଷ ସ୍ୱାଧୀନତା ବିଲୋପର କାହାଣୀ ଗୋହିରା ଟିକିରୀ ଯୁଦ୍ଧ ର ବର୍ଣ୍ଣିତ ଏ କବିତା ରେ ଦେଖିବାକୁ ମିଳେ ।
ଏ କବି ତାର ଏକ ପଂକ୍ତି –" (ସେହିଦିନୁ ଲୁଚି ଗଲେମା ଭଦ୍ର ଗଗନ ତାରା) (ଝରୁଥିଲା ଯହୁଁ ସଂପଦ ସୁଧା ସହିତ ଧାରା)(ମଉଳିଲେ ମା । ଉତ୍କଳ ରାଣୀ ସୀମାନ୍ତମଣି) (ଛପିଗଲେ -କାହିଁ ଶିରୀ ମା ସୃଷ୍ଟି ସୁଷମା ଖଣି,) – ବୈତରଣୀ ପୃଷ୍ଠା –୭୩

ଯାଜପୁର ମାଟିର ଏ ଅମର ଗବେଷକ ୧୯୬୮ ମସିହା ଡିସେମ୍ବର ୨୬ ତାରିଖ ଦିନ ସ୍ୱର୍ଗବାସୀ ହେଲେ । ତାଙ୍କ କୃତିର ଯେପରି ପ୍ରଚାର ପ୍ରସାର ହେବା କଥା ତାହା ଠିକ୍ ଭାବରେ ଆଜିଯାଏଁ ହୋଇନି । ସୌଭାଗ୍ୟ କ୍ରମେ ୧୯୯୩ ମସିହାରେ ଡଃ ବାଉରୀ ବନ୍ଧୁ କର ଙ୍କ ସଂପାଦନା ରେ ବିରୁପାକ୍ଷ ପ୍ରବନ୍ଧାବଳୀ ସଂକଳିତ ହେବା ଓ ୧୯୮୧ ରେ ଡଃ ଅସିତ କବି ଓ ବାଉରୀବନ୍ଧୁ କର ଙ୍କ ଯୁଗ୍ମ ସଂପାଦନା ରେ ବିରୁପାକ୍ଷଙ୍କ ଉତ୍କଳରେ ବୌଦ୍ଧଯୁଗର ଇତିହାସ ଓ ଅନ୍ୟାନ୍ୟ ପ୍ରବନ୍ଧ ପ୍ରକାଶିତ ହେବା ଏକ ସ୍ୱାଗତ ଯୋଗ୍ୟ ପଦକ୍ଷେପ । ତାଙ୍କ ଗବେଷଣା କାର୍ଯ୍ୟକୁ ପୂର୍ଣ୍ଣତା ପ୍ରଦାନ କରିବାପାଇଁ ସମସ୍ତେ ଆଗେଇ ଆସିବା ଦରକାର ।

ସହାୟକ ପୁସ୍ତକ : ୧. ଉତ୍କଳରେ ବୌଦ୍ଧଯୁଗର ଇତିହାସ ଓ ଅନ୍ୟାନ୍ୟ ପ୍ରବନ୍ଧ
ସଂ – ଡଃ ଅସିତ କବି
ଅଧ୍ୟାପକ ବାଉରୀବନ୍ଧୁ କର
୨. ବିରୁପାକ୍ଷ ପ୍ରବନ୍ଧାବଳୀ – ସଂ ଡ: ବାଉରୀବନ୍ଧୁ କର
୩.ପ୍ରାଚୀନ ଉତ୍କଳରେ ଜଳଯାତ୍ରା – ୧୯୨୫
(ପ୍ରଥମ ମୁଦ୍ରଣ)



# କରିତ୍କର୍ମା କାମପାଳ ମିଶ୍ର

ଊନବିଂଶ ଶତାବ୍ଦୀର ମଧ୍ୟଭାଗ ଓଡିଶା , ଓଡିଆ ଓ ଓଡିଆଭାଷା ସାହିତ୍ୟ ପାଇଁ ଏକ ପୁନର୍ଜାଗରଣ ର ଯୁଗ । ଏ ସମୟର ବିବିଧ କୃତି ମଧ୍ୟରେ ଓଡିଆ ନାଟ୍ୟ କ୍ଷେତ୍ରରେ ଯେଉଁ ଜାଗରଣ ସୃଷ୍ଟି ହୋଇଥିଲା ତାର ଅନ୍ୟତମ ଉଦ୍‌ଗାତ । ଥିଲେ କାମପାଳ ମିଶ୍ର । ଲୀଳା, ଯାତ୍ରା, ସୁଆଙ୍ଗ ପରି ଅନେକ ଲୋକନାଟ୍ୟ ମଧ୍ୟରୁ ୧୮୮୦ ମସିହା ପର୍ଯ୍ୟନ୍ତ ଆଧୁନିକ ନାଟକ ଟିଏ ଜନ୍ମ ନେଇନଥିଲା । ଜଗମୋହନ ଲାଲାଙ୍କ "ବାବାଜୀ, ନାଟକ" ୧୮୭୭ ମସିହାରେ ଅଭିନୀତ ଆଧୁନିକ ନାଟକର ଶଂଖ ବାଦନ କରିଥିଲା । ଆଧୁନିକ ଇଂରାଜୀ ଶିକ୍ଷା, ଯେଉଁ ସାଂସ୍କୃତିକ ପରିବର୍ତ୍ତନ ଓଡିଶା ମାଟିରେ ଆଣିଦେଇଥିଲା ଓ ନବ୍ୟ ଶିକ୍ଷତଙ୍କ ସହର ଜୀବନଯାପନ ର ଯେଉଁ ଶୈଳୀ ସମାଜରେ ପ୍ରବେଶ କରିଥିଲା ସେହି ବିଷୟକୁ ନେଇ ସାହିତ୍ୟ ମଧ୍ୟ ଗତିଶୀଳ ହୋଇଥିଲା କିନ୍ତୁ ୧୮୮୧ ମସିହାରେ ରାମଶଙ୍କର ରାୟଙ୍କ କାଞ୍ଚିକାବେରୀ । ଓଡିଆ ନାଟ୍ୟଇତିହାସରେ ଏକ ମାର୍ବଲ ସ୍ତମ୍ଭ । ଜଗମୋହନ ଲାଲା ପ୍ରଥମ ନାଟ୍ୟକାର ହେଲେ ରାମଶଙ୍କର ରାୟ ଓଡିଆ ନାଟକର ପ୍ରାଣ ପ୍ରତିଷ୍ଠାତା, ପୌରାଣିକ ଓ ଐତିହାସିକ ବିଷୟ ବସ୍ତୁଉପରେ ତତ୍କାଳୀନ ନାଟକ ଗୁଡିକ ମୂଳଭିତ୍ତି ଯଦିଓ ବାବାଜୀ, ନାଟକରେ ଜଗମୋହନ ଲାଲା । ସାମାଜିକ ବାତାବରଣକୁ ନାଟକରେ , ଚିତ୍ରଣ କରିବାର ଶୁଭାରମ୍ଭ କରିଥିଲେ । ତାହା ସଫଳ ହେବାକୁ ଦୀର୍ଘଦିନ ଲାଗିଥିଲା କିନ୍ତୁ ରାମଶଙ୍କର ଅମିତ୍ରାକ୍ଷର ଛନ୍ଦ ସଂଳାପର ବ୍ୟବହାର କରି ସେହି ପଂରପଂରା କୁ ଅଧିକ ଆକର୍ଷଣୀୟ ଓ ଲୋକମୁଖୀ କରି ଗଢିତୋଳାଇବାରେ ଜଣେ ସଂଫଳ ନାଟ୍ୟସ୍ରଷ୍ଟା କାମପାଳ ମିଶ୍ର ।

କାମପାଳ ମିଶ୍ର ସପନପୁର ଗ୍ରାମରେ ୧୮୭୫ ମସିହାରେ ଜନ୍ମ । କାମପାଳ ବାବୁ ୧୮୯୭ ରେ କଟକ ରେଭେନସା କଲେଜରୁ ବି.ଏ. ପାସକରି କିଛିଦିନ ମୟୁରଭଞ୍ଜର ଏସ.ଡି. ଓ ଥିଲେ କିନ୍ତୁ ସରକାରୀ କାର୍ଯ୍ୟରେ ତାଙ୍କର ରୁଚି ନଥିଲା । ସେ ୧୯୦୮ ବି. ଏଲ ପାସକରି ଉତ୍କଳଗୌରବ ମଧୁସୂଦନଙ୍କ ନିକଟରେ ଜଣେ ଜୁନିଅର ଓକିଲ ଭାବେ କାର୍ଯ୍ୟ କରିଥିଲେ । ତା ପରେ ତାଙ୍କର ମସ୍ତିଷ୍କ ବିକୃତି ହୋଇଯାଇଥିଲା ଓ ଏହି ମାନସିକ ବିକୃତି ଯୋଗୁ ସେ ସରକାରୀ କାର୍ଯ୍ୟରୁ ନିବୃତ୍ତ ହୋଇଥିବା କଥା ତାଙ୍କ ପୁତ୍ର ଉଲ୍ଲେଖ କରିଛନ୍ତି ।

ଯୁବକ ଅବସ୍ଥାରୁ ସେ ନାଟ୍ୟ ଓ ସଙ୍ଗୀତ ପ୍ରେମୀ ଥିଲେ । ଓଡିଶା ରଂଗମଂଚ

ଇତିହାସରେ ସାରାଦାପ୍ରସାଦ ଦଳବେହେରା ଲେଖିଛନ୍ତି ଯେ ଆଖପାଖ ଅଂଚଳରେ ଯେଉଁଠି ତାଙ୍କ ନାଟକ ଅଭିନୀତ ହୁଏ ସେଠାରେ ସେ ତାହାର ନିର୍ଦ୍ଦେଶନା ଦେବା ଠାରୁ ଆରମ୍ଭ କରି ନିଜ ରଚିତ ଗୀତର ସ୍ୱର ସଂଯୋଜନା ମଧ୍ୟ କରୁଥିଲେ ବିଭିନ୍ନ ଛାନ୍ଦ ଓ ଚଂପୂ ବୋଲିବାରେସେ ଦକ୍ଷ ଥିଲେ । ପିଲାଦିନୁ ସଂଗୀତ ନାଟକ କ୍ଷେତ୍ରରେ ତାଙ୍କର ଗଭୀର ରୁଚିଥିଲା ସେ ୧୯୨୭ ମସିହାରେ ଇହଧାମ ପରିତ୍ୟାଗ କରିଥିଲେ । ରାମଶଙ୍କର ରାୟ ଅମିତ୍ରାକ୍ଷର ଛନ୍ଦକୁ ସର୍ବପ୍ରଥମେ କାଞ୍ଚିକାବେରୀ ନାଟକର ବ୍ୟବହାର କରିଥିଲେ । ଯଦିଓ ଅନେକ ସଫଳତା ଏ କ୍ଷେତ୍ରରେ ରାମଶଙ୍କର ରାୟ ପାଇଥିଲେ କିନ୍ତୁ ଏ କ୍ଷେତ୍ରରେ ନାଟ୍ୟକାର କାମପାଳମିଶ୍ର ସେହି ଶୈଳୀକୁ ସ୍ୱଚ୍ଛନ୍ଦ ଓ ସାବଲୀଳ ରୂପ ପ୍ରଦାନ କରି , ଅଧିକ ଲୋକପ୍ରିୟ କରିଯାଇଛନ୍ତି । ସାସ୍କୃତିକ ସଂଗଠନ କ୍ଷେତ୍ରରେ କାମପାଳ ମିଶ୍ରଙ୍କର ବହୁତ ରୁଚିଥିଲା । ୧୮୯୬ ମସିହାରେ ସେ ଉତ୍କଳମଣି ଗୋପବନ୍ଧୁ ଦାସ ଓ ଦେଶପ୍ରାଣ ବ୍ରଜସୁନ୍ଦର ଦାସଙ୍କ ସହିତ ମିଶି ଗ୍ରାମାଞ୍ଚଳରେ ଧର୍ମ, ସଂସ୍କୃତିକ ଜାଗରଣ, ଶିକ୍ଷାପ୍ରସାର, ଅନ୍ଧବିଶ୍ୱାସ ଦୂରୀକରଣ ପାଇଁ ବିବିଧ କାର୍ଯ୍ୟ ସହିତ ସଂଯୁକ୍ତ ଥିଲେ । ତୁଳସୀ ଦୁଇପତ୍ରରୁ ବାସିଲା ପରି ଛାତ୍ର ଅବସ୍ଥାରୁ କାମପାଳ ବାବୁ ଙ୍କ ସାହିତ୍ୟ ଓ ସମାଜ ଅନୁରାଗ ବଳବତ୍ତର ହୋଇଉଠିଥିଲା । ବିଖ୍ୟାତ ବିଦ୍ୟାବାଗିଶ ପରିବାର ର ପିଲା ସେ । ପିତା ପଣ୍ଡିତ ଦାମୋଦର ମିଶ୍ର (ବିଦ୍ୟାବାଗିଶ) ଓ ତାଙ୍କ ଜ୍ୟେଷ୍ଠଭ୍ରାତା ନୀଳମଣି ମିଶ୍ର (ତର୍କାଳଙ୍କାର) ଙ୍କ ସାନିଧ ଓ ପ୍ରେରଣା ତାଙ୍କୁ ଜ୍ଞାନ ବୃଦ୍ଧି ପାଇ ପ୍ରେରଣା ଦାୟକ ହେବା ସ୍ୱଭାବିକ । କଲେଜ ସାଥୀ, ଅଭିରାମ ଭଞ୍ଜ ଗୋପାଳ ପ୍ରହରାଜ, ବ୍ରଜସୁନ୍ଦର ଦାସ, ଶଶୀଭୂଷଣ ରାୟଙ୍କ ପରି ଓଡିଶାର କୃତିବ୍ୟକ୍ତିତ୍ୱଙ୍କ ବନ୍ଧୁତ୍ୱ ତାଙ୍କ ମନରେ ଦେଶପ୍ରେମ, ଭାଷାପ୍ରେମ ଆଦି ସୃଷ୍ଟି କରିଥିଲା । ଉତ୍କଳ ସମ୍ମିଳନୀର ସଦସ୍ୟ ଭାବେ ମଧୁବାବୁ ଙ୍କ ପ୍ରେରଣା ରେ ସେ ଉଦ୍‌ବୁଦ୍ଧ ହୋଇ ବହୁ ଜାତୀୟଗୀତି ରଚନା କରିଥିଲେ । ତାଙ୍କ ଜାତୀୟ ଭାବାପନ୍ନ "ଅର୍ପୂବ ସ୍ୱପ୍ନ" କବିତାର ନିମ୍ନ ଅଂଶରୁ କାମପାଳ ମିଶ୍ରଙ୍କ ଦେଶାତ୍ମବୋଧ ର ପରିଚୟ ମିଳେ ।

ନାନା ଦେଶ ନାରୀ ଗଣ - ମଧ୍ୟେ ତୋର ।
ଉତ୍କଳ ଜନନୀ ସେହି
କାନ୍ଦେ ଅବିରତ ତୁନି କରିବାକୁ ଜଗତେ ନାହାନ୍ତି କେହି :
କିମ୍ୱା
ସତେକି ଘୁଞ୍ଚିବ ତୋହର ଉତ୍କଳ ଜନନୀ ମନ ବେଦନା
କୋଳେ ଆଉଜାଇ ସୁସୁତ ସତେକି
ସୁଖି ହେବ ସୁଲୋଚନା ?

ସେହିପରି ଜୀବନର ସ୍ୱଚ୍ଛତା ଓ ସାମାଜିକ ଜୀବନରେ ନୀତିବୋଧର ଆବଶ୍ୟକତାକୁ ସେ ତାଙ୍କ କବିତା ରେ ରୂପ ଦେଇଛନ୍ତି ।

ନିନ୍ଦୁକ ବଚନ ନଶୁଣିବ କାଳେ
ଶୁଣିଲେ ବା କି ହୋଇବ ?
ବରଂ ଅପକାର ହୋଇବ ଅପାର
ଦିନ କେବେ ନଟଳିବ ।

ଇଂରେଜୀ ନାଟ୍ୟକାର ସେକସ ପିଅର ତାଙ୍କର ଆଦର୍ଶଥିଲେ । ସେକସ୍ ପିଅରଙ୍କ (As you like it, King Lear ) ଛାୟାରେ ସେ ବସନ୍ତ ଲତିକା ଓ ଦୁର୍ଗାଶର୍ବରୀ ନାଟକ ଲେଖିଛନ୍ତି ବୋଲି ପଣ୍ଡିତ ମାନେ ମତ ପ୍ରକାଶ କରନ୍ତି । ଶିକ୍ଷା ଓ ସମାଲୋଚନା ପ୍ରବନ୍ଧରେ ପାଠକ - ଲେଖକ ଓ ଗଠନ ମୂଳକ ସମାଲୋଚନାର ବିଭିନ୍ନ ଦିଗ ସମ୍ବନ୍ଧରେ ଆଲୋକ ପାତ କରିବା ସହିତ ଓଡିଶାରେ ସେ ସମୟ ରେ ଇନ୍ଦ୍ରଧନୁ - ବିଜୁଳୀ ପତ୍ରିକାର ରୁଚିହୀନ ସମାଲୋଚନାର ଦିଗ କୁ କଠୋର ଭାବେ ସତର୍କ ବାଣୀ ଶୁଣାଇଛନ୍ତି । ବିଧବା ଓ ବାଲ୍ୟ ବିବାହ ପୃଷ୍ଠ ଭୂମିରେ ସେ ୨ଟି ଗଳ୍ପ ଲେଖିଥିଲେ । ଅମ୍ବିକା ଓ ଦ୍ୱିତୀୟଟି ପ୍ରଭାମୟୀ । ବହୁ କବିତା ର ଲେଖକ କାମପାଳ ମିଶ୍ର । ଗୀତିକବିତା ଗୁଡିକ ମଧ୍ୟରେ ଆଶା, କବି ଉପେନ୍ଦ୍ର ଭଞ୍ଜ ବନେ ବନମାଳୀ, ଉଷା ଓ ଗୋପାଳ, କାଳଚକ୍ର ଗୁଡିକ ଲୋକପ୍ରିୟ ସାହିତ୍ୟ, ସମାଜ, ସଂସ୍କୃତି, ଦେଶଗଠନ ଆଦି କାର୍ଯ୍ୟପାଇଁ ସେ ସ୍ମରଣୀୟ । ଛାତ୍ର ଅବସ୍ଥାରୁ ଗ୍ରାମାଞ୍ଚଳରେ ପ୍ରଚଳିତ ବିଭିନ୍ନ ଅନ୍ଧବିଶ୍ୱାସର ଦୂରୀକରଣ ଓ ସର୍ବୋପରି ଏକ ଜାତୀୟ ଚେତନା ସୃଷ୍ଟି କରିବାକୁ ବିଭିନ୍ନ ସଂଗଠନମାନେ ଗଢି କାର୍ଯ୍ୟ କରିଥିଲେ । ହରିଭକ୍ତି ପ୍ରଦାୟିନୀ ଶିକ୍ଷାବିବର୍ଦ୍ଧିନୀ (୧୮୮୪) ଓ (observer club) ର ସେ ସକ୍ରିୟ ସଭ୍ୟଥିଲେ ଏଥିରୁ କାମପାଳ ମିଶ୍ରଙ୍କ ସାମାଜିକ ଚେତନା ସହ ଲୋକସମ୍ପର୍କ ସ୍ପଷ୍ଟ ଉତ୍କଳ ସାହିତ୍ୟରେ ଶିକ୍ଷା ଓ ସମାଲୋଚନା ନାମକ ପ୍ରବନ୍ଧ ପ୍ରକାଶ ତାଙ୍କର ପାଇଥିଲା ।

ସଂସ୍କୃତ ନାଟ୍ୟକଳା ଥିଲା କାମପାଳ ବାବୁଙ୍କ ଆଦର୍ଶ । ସେ ନାଟକୀୟ ସଂଳାପ ଗୁଡିକୁ ଯଥାସମ୍ଭବ କବିଜନ ସୁଲଭ ଲାଳିତ୍ୟରେ ଭରିଦେଇଛନ୍ତି । ପୌରାଣିକ ବିଷୟ ବସ୍ତୁ ଓ ଚରିତ୍ର ଗୁଡିକୁ ଯଥାସମ୍ଭବ ମାନବୀୟ ରୂପରେଖା ପ୍ରଦାନ କରିବାରେ ସେ ଅଗ୍ରଦୂତ । ତାଙ୍କର ସୀତାବିବାହ । ନାଟକରେ ଅଧିକ ଲୋକପ୍ରିୟ ହେବା ପଛରେ ତାଙ୍କର ଏହି ଚେତନା ଲକ୍ଷଣୀୟ । ସଂସ୍କୃତ ରୀତିରେ ସୀତା ବିବାହ ନାଟକରେ ଉଚ୍ଚବଂଶଜ ନାୟକ ନାୟିକା , ରାମାୟଣ ର କଥା ବସ୍ତୁ , ପ୍ରସ୍ତାବନ । ବିଦୂଷକ ଚରିତ୍ର । ଅଂକ ବିଭାଜନ ସବୁ ଦେଖିବାକୁ ମିଳେ । ଏ ନାଟକରେ ସୀତା ଯେପରି ଜଗତ ଜନନୀ ନୁହଁନ୍ତି

ବଂର ବେଶୀ ମାତ୍ରାରେ ଜଣେ ସରଳା ଗ୍ରାମ୍ୟ ତରୁଣୀ । ସେହିପରି ଜନକ, ଜନକ ପତ୍ନୀ ସୀତାଙ୍କ ସଖିଙ୍କୁ । ଚମତ୍କାର ଭାବେ ମାନବୀୟ ରୂପ ପ୍ରଦାନ କରାଯାଇଛି । ଗିରିଜାଶଙ୍କର ରାୟ ଓଡିଆ ନାଟକଳା ପୃଷ୍ଠା - ୧୯୫ ରେ କାମପାଳ ବାବୁଙ୍କ ନାଟକ କୁ ସମୀକ୍ଷା କରି କହିଛନ୍ତି ।

"ଏଠାରେ ନାଟ୍ୟକାର ଅତିମାନବ ଚରିତ୍ରମାନଙ୍କୁ ଆପାର୍ଥିବ ଆସନରୁ ଖସାଇ ଆଣି ମାନବି ରୂପରେ କଳ୍ପନା କରି ଓ ସେମାନଙ୍କ ଉପରେ ମାନବିକତା ଆରୋପକରି ସେମାନଙ୍କୁ ଜୀବନ୍ତ କରିବାକୁ ଚେଷ୍ଟା କରିଛନ୍ତି ଓ ବାତ୍ସଲ୍ୟ ରସର ଗୋଟିଏ ପ୍ରକୃଷ୍ଟ ଚିତ୍ର ଦେଇ ସାଧାରଣ ମନୁଷ୍ୟର ଭୟ, କ୍ରୋଧ ପରି ପ୍ରବୃତ୍ତି ପୌରାଣିକ ଚରିତ୍ରମାନଙ୍କ ଉପରେ ଆରୋପ କରି ନାଟକକୁ ସରସ କରବାକୁ ଚେଷ୍ଟା କରିନ୍ତି । ବହୁ ସମୟରେ ନାଟ୍ୟକାର ଯଦିଓ ଏହା ମଂଚମୂଲ୍ୟ ପ୍ରତି ସଚେତନ ହୋଇ ନାହାନ୍ତି ତଥାପି ଏହାକୁ ଏକ ଉଚ୍ଚମାନର ସାହିତ୍ୟିକ ନାଟକର ମର୍ଯ୍ୟାଦା ଦେବାକୁ ଯଥେଷ୍ଟ ଚେଷ୍ଟା କରିଛନ୍ତି । ଗଦ୍ୟ - ପଦ୍ୟ ମଣ୍ଡିତ ପାତ୍ରମୁଖୀ ଭାଷା ଓ ଅମିତ୍ରାକ୍ଷର ଛନ୍ଦର ବ୍ୟବହାର ଏହାକୁ ସୁଖପାଠ୍ୟ କରିଛି । ୧୮ଟି ଛୋଟ ସଂଗୀତ ଏଥିରେ ସ୍ଥାନ ପାଇଛି । ଯଦିଓ ନାଟ୍ୟକାର ବହୁସମୟରେ ପୌରାଣିକ ନାଟକର ସମୟ ସମ୍ବନ୍ଧରେ ସଚେତନ ନ ହୋଇ ଏହାକୁ ଆଧୁନିକ କରିବାକୁ ଚେଷ୍ଟା କରିଛନ୍ତି କିନ୍ତୁ ନାଟକର ପରିବେଷଣ ଶୈଳୀ ଓ ଲୋକପ୍ରିୟତାର ଆବରଣରେ କ୍ଷୁଦ୍ର କ୍ଷୁଦ୍ର ତ୍ରୁଟି ଗୁଡିକ ଆଦୃଶ୍ୟ । ହୋଇ ଯାଇଛି । ସୀତା ବିବାହ ନାଟକର ଲୋକପ୍ରିୟତା ପାଇଁ ତାହାର ଉଚ୍ଚାଙ୍ଗ ନାଟକତ୍ୱ ଦାୟୀ ବୋଲି ଅଭିରାମ ଭଞ୍ଜ ମତ ଦେଇଛନ୍ତି ଡଃ ରତ୍ନାକର ଚଇନି ତାଙ୍କ ଓଡିଶା ନାଟକରେ ଉଦ୍‌ଭବ ବିକାଶରେ ମତ ଦେଇ କହିଛନ୍ତି । ପ୍ରକୃତରେ ଯଥାର୍ଥମାନବ ଚରିତ୍ର ଅନୁଧାନ ଅଭାବରୁ ଅନ୍ୟାନ୍ୟ ନାଟକ ଗୁଡିକ ସେତେ ଲୋକପ୍ରିୟ ହୋଇ ପାରୁନଥିଲା । ସୀତା ବିବାହ ତାହା ପୂରଣ କରିବା ଫଳରେ ଲୋକପ୍ରିୟ ହୋଇଥିଲା । ସୀତା ବିବାହ ତାହା ପୂରଣ କରିବା ଫଳରେ ଲୋକପ୍ରିୟ ହୋଇଥିଲା ଓ ପରେ ପ୍ରଥମ ଓଡିଆ ଚଳଚିତ୍ର ହେବାର ଗୌରବ ହାସଲ କରିଥିଲା । ଓଡିଆ ଚଳଚିତ୍ର ଇତିହାସରେ ସୀତା ବିବାହ ନାଟକ ଓ ନାଟ୍ୟକାର କାମପାଳ ମିଶ୍ର ସ୍ମରଣୀୟ ହୋଇ ରହିବ । ସୀତାବିବାହ ନାଟକ ୧୮୯୯ ମସିହାରେ ଅଭିନୀତ ହେଲା ପରେ ଏହା ତତ୍‌କାଳୀନ ବୁଦ୍ଧିଜିବୀ ମହଲରେ ଚହଳ ପକାଇ ଦେଇଥିବା କଥା ଜାଣିବାକୁ ମିଳେ । ଏହି ଗ୍ରନ୍ଥ ଟି ଏତେ ଲୋକପ୍ରିୟ ହୋଇଥିଲା ଯେ ଏହାର ପ୍ରଥମ ସଂସ୍କରଣ ଟି ଖୁବ୍ ଶ୍ରୀଘ୍ର ଶେଷ ହୋଇଗଲା ଓ ଦ୍ୱିତୀୟ ରେ ସଂସ୍କରଣ ପ୍ରକାଶ ଲାଭ କରିବାକୁ ୧୯୨୯ ଯାଏଁ ଅପେକ୍ଷା କରିବାକୁ ହେଲା ସୀତା ବିବାହ ନୂର୍ପରୁ ପୂର୍ବରୁ ଏକ କାବ୍ୟ ରଚନା କରି

ନିଜ ସାହିତ୍ୟିକ ଜୀବନର ପରିଚୟ ଦେଇଥିଲେ । ଅତଏବ ସୀତାବିବାହ ନାଟ୍ୟକାରାଙ୍କ କଞ୍ଚା ହାତରେ ପିତୁଳା ହୋଇନଥିବାରୁ ଏତେ ମାତ୍ରାରେ ସଂଫଳ ହୋଇଥିଲା । ଏ ମତ ଓଡିଆନାଟକର ଉଦ୍‌ଭବ ବିକାଶ ପୃଷ୍ଠାରେ ଡଃ ରତ୍ନାକର ଚଇନିଙ୍କର କେତେକ କ୍ଷୁଦ୍ର କବିତା ଓ ଅପୂର୍ବ ସ୍ୱପ୍ନ କାବ୍ୟର ରଚୟିତା କାମପାଳ ମିଶ୍ର ସୀତା ବିବାହ ଓ ବସନ୍ତ ଲତିକା ବ୍ୟତୀତ । ହରିଶ୍ଚନ୍ଦ୍ର, ଦୁର୍ଗାଶବରୀ ନାମକୁ ୨ଟି ନାଟକ ଓ ପ୍ରଭାମୟୀ ଉପନ୍ୟାସ ରଚନାରେ ବ୍ରତୀ ହୋଇଥିଲେ ବୋଲି ଉମାକାନ୍ତ ମିଶ୍ର ପ୍ରକାଶ କରିଛନ୍ତି ।

ଓଡିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ଡଃ ନଟବର ସାମନ୍ତ ରାୟ ବସନ୍ତ ଲତିକା ଐତିହାସିକ ନାଟକ ବୋଲି ମନେହୁଏ । କିନ୍ତୁ ଏହା କାଳ୍ପନିକ ବୋଲି ଆଲୋଚକ ମାନେ ମତପ୍ରକାଶ କରିଛନ୍ତି । ଡଃ ନଟବର ସାମନ୍ତରାୟଙ୍କ ମତରେ କବି କଳ୍ପନାର ସ୍ୱାଧିନ ବ୍ୟବହାର ଆମେ ବସନ୍ତ ଲତିକା (ପ୍ରକାଶ ସମୟ ୧୯୩୩) ରେ ଦେଖିବା ଐତିହାସିକ ପରିବେଶ ବିମଣ୍ଡିତ ଏ ନାଟକର କୌଣସି ବ୍ୟକ୍ତି ଇତିହାସର ବୋଲି ମନେହୁଏ ନାହିଁ । ଗୋପାଳ ପ୍ରହରାଜ ଯଥାର୍ଥତଃ କହିଛନ୍ତି । ଏ ନାଟକର କଥା କାଳ୍ପନିକ ବୋଲି ଅନୁମିତ ହୁଏ । ନାଟକର ବିଷୟବସ୍ତୁ ଏ ଶୈଳ୍ପିକ ବିନ୍ୟାସ କୌଶଳ ସର୍ବାଂଶରେ କଳା ଚାତୁର୍ଯ୍ୟମୟ, ଏ ନାଟକର ଶୈଳ୍ପିକ ମୂଲ୍ୟ ସୀତାବିବାହ ଠାରୁ ଅତି ଉଚ୍ଚରେ । ଆଲୋଚକ ମାନଙ୍କର ଏ ସବୁ ମତାମତ କାମପାଳ ବାବୁଙ୍କ ମଂଚଜ୍ଞାନ, ଭାଷାଚାତୁରୀ ଓ ଉଚ୍ଚମାନର କଳ୍ପନା ଶକ୍ତିର ପରିଚୟ ଦିଏ । ବସନ୍ତଲାତିକା ୧୯୧୩ ମସିହାରେ ରଚିତ ହୋଇଥିଲା ଓ ୧୯୩୩ ମସିହାରେ ନାଟ୍ୟକାରଙ୍କ ଅକାଳ ବିୟୋଗ ପରେ ଆଠମଲ୍ଲିକ ରାଜା କିଶୋର ଚନ୍ଦ୍ରଦେବଙ୍କ ଆର୍ଥିକ ସହାୟତାରେ ୧୯୩୩ ରେ ପ୍ରକାଶ ପାଇଥିଲା ବସନ୍ତ ଲତିକା ନାଟକ ତତ୍‌କାଳୀନ ଓଡିଶାର ପ୍ରଧାନ ନାଟ୍ୟଦଳ ବଳଙ୍ଗା ଥିଏଟର ପାର୍ଟି ଦ୍ୱାରା ପ୍ରଥମେ ଅଭିନୀତ ହୋଇଥିଲା । ପରେ ବିଭିନ୍ନ ସ୍କୁଲ, କଲେଜ ମେଡିକାଲ ସ୍କୁଲ ପିଲାମାନଙ୍କ ଦ୍ୱାରା ବହୁବାର ଅଭିନୀତ ହୋଇଛି । ସୀତାବିବାହ ନାଟକ ଟି ପ୍ରଥମେ କଟକ ଜିଲ୍ଲା କୋଠପଦା ଗ୍ରାମର ମହାନ୍ତ ତପୋନିଧି ରଘୁନାଥ ପୁରୀ ଗୋସାଇଁଙ୍କ ରଂଗାଳୟରେ ଅଭିନୀତ ହୋଇଥିଲା । ପରେ ଓଡିଶାର ପୁରପଲ୍ଲୀରେ ଏହାର ଅଭିନୟ ହେବାର ସମ୍ବାଦ ମିଳେ ।

ବୀରରସ ଓ ପ୍ରେମରସର ସମବାୟ ହିଁ : ବସନ୍ତଲତିକା ନାଟକର ମୂଖ୍ୟ କୌଶଳ, ଏହି ନାଟକ ଉପରେ ମତାମତ ଦେବାକୁ ଯାଇ ସୁସାହିତ୍ୟକ ବିଶ୍ୱନାଥ କର କହିଛନ୍ତି। ଘଟାଣାବଳୀର ସମାବେଶ ଓ ଚରିତ୍ର ଚିତ୍ରଣରେ ଲେଖକ ଯଥେଷ୍ଟ ଦକ୍ଷତା ପ୍ରକାଶ କରିଅଛନ୍ତି । ତାଙ୍କର ଭାଷା ବିଶୁଦ୍ଧ, ସରସ ଓ ସୁଲଳିତ । ଯଥାସ୍ଥାନରେ ସନ୍ନବେଶିତ

ଗୀତଗୁଡିକ ଯେପରି ମଧୁର ସେହିପରି ଭାବାପୂର୍ଣ୍ଣ ୪ ଅଙ୍କରେ ଏ ନାଟକର ପ୍ରସ୍ତାବନା ଅଛି, ମାତ୍ର ସୂତ୍ରଧର ଓ ନଟନଟୀ ସ୍ଥାନରେ ନାଟ୍ୟକାର ପାର୍ବତୀ (ସୂତ୍ରଧାରା) ଓ ମୟୁରଭଞ୍ଜ ର ରାଜଲକ୍ଷ୍ମୀ (ନଟୀ) ଚରିତ୍ରକୁ ନେଇଛନ୍ତି । ଘଟଣାବଳୀ ର ସମାବେଶ ଯେତେ ଚମତ୍କାର ହେଲେ ସୁଦ୍ଧା ନାଟ୍ୟକାର ସୀତା ବିବାହ ଭଳି ସଫଳ ହୋଇ ପାରିନାହାନ୍ତି । ?

ଡଃ ରତ୍ନାକର ଚଇନି (ଓଡିଆ ନାଟକର ଉଦ୍‌ଭବ ଓ ବିକାଶ) ଆଲୋଚକ ମାନେ କେହି ସୀତାବିବାହ କୁ ତାଙ୍କର ଶ୍ରେଷ୍ଠ କୃତି କହିଲା ବେଳେ, କେହି ବସନ୍ତ ଲତିକା କୁ ଶ୍ରେଷ୍ଠତ୍ୱ ର ମାନ୍ୟତା ଦେଇଥାନ୍ତି । କାମପାଳ ମିଶ୍ରଙ୍କ ଅନ୍ୟାନ୍ୟ ରଚନା ଲୋକ ଲୋଚନକୁ ଆସିନାହିଁ । କିନ୍ତୁ ଲୋକସ୍ମୃତିରେ ଏଯାବତ୍ ଏକ ମର୍ଯ୍ୟାଦାପୂର୍ଣ୍ଣ କୃତି ଭାବେ ରହିଆସିଛି । ଆର୍ଥୀକ କାରଣ ଓ ନାଟ୍ୟକାରଙ୍କ ଆକସ୍ମିକ ମସ୍ତିଷ୍କ ବିକୃତି ଓ ଅକାଳ ବିୟୋଗ ରେ ଓଡିଆ ସାହିତ୍ୟ ବହୁ କିଛି ହରାଇଛି । ସେ ଯାହା ହେଉ ଯାଜପୁର ର ଏ କୃତି ସନ୍ତାନ ଓଡିଆ ସାହିତ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଆସିଛନ୍ତି ଓ ଚଳଚିତ୍ର ଇତିହାସରେ ପ୍ରଥମ ନାଟ୍ୟକାରର ସମ୍ମାନ ତାଙ୍କୁ ଅମର କରିରଖିଛି ।

କାମପାଳ ମିଶ୍ରଙ୍କ ପ୍ରସିଦ୍ଧ ପ୍ରବନ୍ଧ । ଶିକ୍ଷା ଓ ସମାଲୋଚନା । ବହୁଦିନ ଧରି ଉତ୍କଳ ବିଶ୍ୱବିଦ୍ୟାଳୟର ବି.ଏ ପାଠ୍ୟକ୍ରମରେ ସ୍ଥାନ ପାଇଥିଲା । ସାହିତ୍ୟିକ ସମାଲୋଚନା କଣ ଓ କିପରି ହେବା ଉଚିତ ସେ ଏହି ପ୍ରବନ୍ଧରେ ପ୍ରତିପାଦିତ କରିଛନ୍ତି ।

ସାହିତ୍ୟ ସଂଗୀତ, ସମାଜସେବା, ଆଦି ବହୁ କ୍ଷେତ୍ରରେ ଏକ ଅଗ୍ରଗାମୀ ବ୍ୟକ୍ତିତ୍ୱ ଥିଲେ କାମପାଳ ମିଶ୍ର, ଏ ମାଟି ତାଙ୍କ ପରି କରିତ୍ କର୍ମା ଙ୍କୁ ପାଇ ଧନ୍ୟ ହୋଇଛି ।

ସହାୟିକା ପୁସ୍ତକ :


୧. ଓଡିଆ ନାଟକର ଉଦଭବ ଓ ବିକାଶ , ଡଃ ରତ୍ନାକର ଚଇନି ।

୨. ଓଡିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)
ଡଃ ନଟବର ସାମନ୍ତରାୟ

୩. ଯୁଗେ ଯୁଗେ ନାଟ୍ୟ ସାହିତ୍ୟ
ବୀରକିଶୋର ଦାସ

୪. Cultural Heritage of Jajpur - 2005, Pub - State...
Fakir Mohan Smuti Sansad, Bhubaneswar

# କବିମଂଜୁଳ କୃଷ୍ଣପ୍ରସାଦ ବସୁ

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପ୍ରାଚୀନ ଓଡିଆ ଯାତ୍ରା, ଗୀତିକବିତା କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଦେଖାଯାଇଥିଲା । ଅତୀତ ଉତ୍କଳର ଲୋକନୃତ୍ୟ, ଲୋକଗୀତ ର ବହୁଳ ବ୍ୟବହାର ଯାତ୍ରାରେ କରାଯାଉଥିଲା । ଭାଷା ଥିଲା ସଂପୂର୍ଣ୍ଣ ପଦ୍ୟଧର୍ମୀ ଓ ଇତର ହାସ୍ୟରସ ଭରା । ସମୟ ସଚେତନତା ବି କମ୍ ଯାତ୍ରାରେ ଦେଖା ଯାଇଥିଲା । ପୁରାଣରେ ଇତିହାସ ଓ ଇତିହାସ ରେ ତତ୍କାଳୀନ ସମାଜ ର ରୀତି ନୀତି ଫେଣ୍ଟି ହୋଇ ରହିଥିଲା । ଯାତ୍ରା ର ମୁଖ୍ୟ ଲକ୍ଷ୍ୟ ଥିଲା ଯେ କୌଣସି ପ୍ରକାର ଜନରଂଜନ କରିବ । ଆଧୁନିକୀକରଣ ଚିନ୍ତାଧାରର ଲହର ବଂଗମାଟି ଦେଇ ଓଡିଶା କୁ ପ୍ରବେଶ କଲା । ଓଡିଆ ନାଟ୍ୟକାର ମାନେ ହଠାତ ସମୟ ସଚେତନ ହୋଇ ଉଠିଲେ ଓ ପଦ୍ୟ ବଦଳରେ ଗଦ୍ୟ ସଂଳାପକୁ ପ୍ରୟୋଗ କରିବାକୁ ଆଗେଇ ଆସିଲେ ସେମାନଙ୍କ ମଧ୍ୟରୁ କୃଷ୍ଣପ୍ରସାଦ ବସୁ ଅଗ୍ରଣୀଥିଲେ । ଏହି ସମୟରେ ଓଡିଶାରେ ଯାତ୍ରାରେ ଆଧୁନିକତା ଆଣି ଏହାକୁ ପୂର୍ଣ୍ଣ ବ୍ୟବସାୟିକ ରୂପଦେବାକୁ କେତେଜଣ ବରେଣ୍ୟ ନାଟ୍ୟକାର ଚେଷ୍ଟା କରିଥିଲେ । ସେମାନଙ୍କ ମଧ୍ୟରୁ ଗଣକବି ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି, ଗୋପାଳ ଦାଶ ପ୍ରମୁଖ ଥିଲେ । ସେମାନଙ୍କ ପଦାଙ୍କ ଅନୁସରଣ କରି କୃଷ୍ଣପ୍ରସାଦ ବସୁ ଯାଜପୁର ଠାରେ "ବିରଜା ଅପେରା" ଗଠନ କରିଥିଲେ । ଏହା ବସୁ ମହାଶୟଙ୍କ ସର୍ଜନଶୀଳତା, ମାର୍ଜିତ ରଚିବୋଧ କୋମଳ ତଥା ଲାଳିତ୍ୟପୂର୍ଣ୍ଣ ସଂଗୀତ ମାଧୁରୀ ସହି ଯୁକତିସଂଗତ ସଂଳାପ ମାଧ୍ୟମ ରେ ପୂର୍ବସୂରୀ ଙ୍କ ଅମର କୃତି ଗୁଡିକୁ ଅତିକ୍ରମ କରିଯାଇଥିଲେ। ସେ ବହୁ ପ୍ରତିଭାର ଅଧିକାରୀ ଥିଲେ । ଜଣେ ଆଦର୍ଶ ବିଜ୍ଞାନ ଶିକ୍ଷକ, ସ୍ୱାଧୀନତା ସଂଗ୍ରାମୀ, ସଂଗୀତଜ୍ଞ, ବହୁଶାସ୍ତ୍ରବିଦ୍, ଲୋକପ୍ରିୟ ଅଭିନେତା, ନିର୍ଦ୍ଦେଶକ, କଂଠଶିଳ୍ପୀ, ନାଟ୍ୟକାର କାବ୍ୟକାର, ରେକର୍ଡ କମ୍ପାନୀର ଗାୟକ , ଔପନାସିକ ଓ ବିଶିଷ୍ଟ ରମ୍ୟ ରଚନାକାର, ଓଡିଆ ପାଲା ସାହିତ୍ୟର ଗୌରବ ତାଙ୍କୁ ହିଁ ମିଳେ । ଯାଜପୁର ମାଟିର ଏହି ବହୁମୁଖୀ ପ୍ରତିଭା ସମ୍ବନ୍ଧରେ ଏଠାରେ ଆଲୋଚ୍ୟ ।

କୃଷ୍ଣପ୍ରସାଦ ବସୁ ୧୮୯୪ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୨୧ ତାରିଖରେ ଯାଜପୁର ସହରର କୁଆଁସର - ପୁର ଗ୍ରାମରେ ଏକ ଧନୀ ଜମିଦାର ପରିବାରରେ ଜନ୍ମ । ତାଙ୍କ ପୂର୍ବପୁରୁଷ ମାନେ ପଶ୍ଚିମବଙ୍ଗର ବର୍ଦ୍ଧମାନ ଅଞ୍ଚଳର ଲୋକ । ତାଙ୍କ ପିତାଙ୍କ ନାମ

ଗୋବିନ୍ଦ ପ୍ରସାଦ ଓ ମାତାଙ୍କ ନାମ ବିଷ୍ଣୁପ୍ରିୟା । ସେ ଜମିଦାର ଘରର ପିଲା । ଓଡିଶା ପ୍ରସିଦ୍ଧ ଯାଜପୁରସ୍ଥ ବିଶାଳ ବିରଜାହାଟଟି କବିଙ୍କ ପରିବାର ଦ୍ୱାରା ପ୍ରତିଷ୍ଠିତ ଓ ତାର ସତ୍ତ୍ୱାଧିକାରୀ ବସୁବଂଶର ଲୋକ । ତେଣୁ ଆର୍ଥିକ ସ୍ୱଚ୍ଛଳତା ମଧ୍ୟରେ ତାଙ୍କର ସାରସ୍ୱତ ବ୍ୟାକୁଳତା ସୃଷ୍ଟି ହୋଇଥିଲା । ପିତା ଗୋବିନ୍ଦ ପ୍ରସାଦ ଜମିଦାର, ଅତିଥି ବତ୍ସଳ ଓ ସଙ୍ଗୀତାନୁରାଗୀ । ବିଭିନ୍ନ ବାଦ୍ୟଯନ୍ତ୍ର ବଜାଇବାରେ ଧୁରନ୍ଧର ଥିଲେ ଓ ବାଦ୍ୟଯନ୍ତ୍ର ଶିଖାଇବା କ୍ଷେତ୍ରରେ ମଧ୍ୟ ପୋଖତ ଶିକ୍ଷକଥିଲେ । ସେ ନିଜ ଘରେ "ହରିଘର" ନାମକ ଏକ ସ୍ୱତନ୍ତ୍ର ପକ୍କା ଗୃହ କରି ସେଠାରେ ସାଧୁ ସନ୍ଥ କୀର୍ତ୍ତନ ମଣ୍ଡଳୀ, ରାସ, ଲୀଳା, ସୁଅଙ୍ଗ ଆଦି ଅଭିନୟ କରାଉଥିଲେ ଓ ସଙ୍ଗୀତରେ ଏକ ମଧୁମୟ ପରିବେଶ ହରିଘର ରେ ଚାଲିଥିଲା ଗୋବିନ୍ଦ ପ୍ରସାଦ ବସୁଙ୍କ ହରିଘର ଯେପରି ଏକ ସାଂସ୍କୃତିକ ଅନୁଷ୍ଠାନ । ଏ ଅନୁଷ୍ଠାନ ପ୍ରଭାବ ବିସ୍ତାର କରିଥିଲା । ଆଦର୍ଶ ସଂସ୍କୃତି ଓ ଧର୍ମପ୍ରେମୀ ପିତାମାତା, ସୁନାମ ଧନ୍ୟ କୀର୍ତ୍ତନ ଗାୟକ ଶ୍ରୀ ହରିଦାସ ବାବାଜୀ ସମେତ ଓଡିଶାର ଅନ୍ୟାନ୍ୟ ସଂଗୀତ ମଣ୍ଡଳୀର ଗାୟକ, ସାଧୁସନ୍ଥ ମାନଙ୍କ ସାନିଧ, ତତ୍କାଳୀନ ବିଶିଷ୍ଟ ବିଦ୍ୱାନ ପଣ୍ଡିତ ନୀଳମଣି ଆଦିଙ୍କ ନିକଟତର ହୋଇ ମେଧାବୀ ଛାତ୍ର କୃଷ୍ଣବସୁ ଭାବି ଉତ୍କଳର ଏକ ସୁଯୋଗ୍ୟ ସାଂସ୍କୃତିକ ପୁରୁଷଭାବେ ଯେପରି ଗଠିତ ହୋଇଗଲେ । ୧୯୧୨ ମସିହାରେ ବସୁ ମହୋଦୟ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନସ୍ ଓ ରେଭେନସା କଲେଜରେ ଆଇ. ଏସ. ସି. ପଢିଥିଲେ । ରେଭେନସା କଲେଜର ପୂର୍ବ ହଷ୍ଟେଲରେ ରହୁଥିଲେ ଓ ସେହି ସମୟରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ନିକଟତର ହୋଇଥିଲେ । ଉଭୟଙ୍କ ମିଳନ ସଂଗୀତ ଇତିହାସରେ ଏକ ମଣିକାଞ୍ଚନ ସଂଯୋଗ" ସେମାନଙ୍କୁ ଉତ୍ସାହ ଦେଲେ ଛାତ୍ରବତ୍ସଳ ଅଧ୍ୟାପକ କଳିକତାର ସତୀଶଚନ୍ଦ୍ର ରାୟ । ଏହି ସଂଗୀତାନୁରାଗ ପାଇଁ ସେ ରେଭେନସା କଲେଜରୁ ଯାଇଁ ସେଣ୍ଟ ଜାଭିୟାର୍ସ କଲେଜରେ ନାମ ଲେଖାଇ ୧୯୧୪ ରେ ପ୍ରଥମ ଶ୍ରେଣୀରେ ଆଇ. ଏସ୍, ସି ପାଶ କଲେ ଓ ରାସାୟନ ଅନର୍ସ ନେଇ ବି. ଏସ.. ସି ପଢିଲେ । କଲିକତାର ସଂଗୀତ ଶିକ୍ଷାର ବିଶେଷ ସୁଯୋଗ ଥିଲା ଏ ବିଜ୍ଞାନ ଛାତ୍ରଟି ସଂଗୀତ ପ୍ରେମରେ ପଡିଥିଲେ । ମସ୍ତିଷ୍କର ବିଦ୍ୟାରେ ହୃଦୟର ଅନୁପ୍ରବେଶ ଘଟିଥିଲା । ତାଙ୍କ କଲିକତା ରହଣୀକାଳରେ ସେ କରନୋଥିଆନ ଥିଏଟର କମ୍ପାନୀର ମାଲିକ ଜି. ଏଫ. ମ୍ୟାଡାନଙ୍କ ପୁତ୍ର ଫ୍ରେମଜୀ ମ୍ୟାଡାନଡ୍କ ବଂଧୁ ଭାବରେ ବହୁ ସଂଗୀତଜ୍ଞ ଓ ଅଭିନେତା, ଲେଖକଙ୍କର ସାନିଧ ଲାଭ କଲେ । ସେମାନଙ୍କ ମଧ୍ୟରେ ପ୍ରମୁଖ ବ୍ୟକ୍ତି ବିଶେଷ ହେଲେ ଷ୍ଟାର ଥିଏଟରର ବିଖ୍ୟାତ ଅଭିନେତା ଅମରଦତ୍ତ, ସତ୍ୟଜିତ ରାୟଙ୍କ ପିତାମହ ବିଶିଷ୍ଟ ଲେଖକ ଓ ବେହେଲା ଶିଳ୍ପୀ-ଉପେନ୍ଦ୍ର ରାୟ ଚୌଧୁରୀ ଓସ୍ତାଦ କାଦେର ବକସ୍ ଓସ୍ତାଦ ଜମିରୁଦ୍ଦୀନ, ଇଶ୍ୱରୀ

ପ୍ରସାଦ, ଚାରଣକବି ମୁକୁନ୍ଦ ଦାଶ ଓ ମୋତିଲାଲ ରାୟ ଙ୍କ ସାନିଧ ଲାଭ କରିଥିଲେ । ଏ ଚାରଣ କବିଦ୍ୱୟ ଦେଶପ୍ରେମ କବିତା ରଚନା କରି ଯାତ୍ରା ମାଧମରେ ଗାମେ ଗ୍ରାମେ ସ୍ୱାଧୀନତା ସଂଗ୍ରାମର ଚେତନା ପ୍ରଚାର କରିଥିଲେ । ବି. ଏସ.ସି. ପଢିବା ସମୟରେ ଆମ ସ୍ୱାଧୀନତା ସଂଗ୍ରାମ ଗତିଶୀଳ ହୋଇଉଠିଥିଲା "ଯୁଗଜ୍ୟୋତି ମହାପ୍ରାଣ ଅରବିନ୍ଦଙ୍କ ନେତୃତ୍ୱରେ କୃଷ୍ଣପ୍ରସାଦ ବସୁ ସ୍ୱାଧୀନତା ସଂଗ୍ରାମରେ ତାଙ୍କ ପ୍ରେରଣାରେ ଯୋଗ ଦେଇ ତାଙ୍କ ବସା ଅମହର୍ଷ୍ଟ ଷ୍ଟ୍ରିଟ ମେସରୁ ରାତି ଅଧରେ ପୋଲିସ ଦ୍ୱାରା ଗିରିଫ ହୋଇଥିଲେ ଓ ଦୁଇମାସ କାରାବରଣ କରିଥିଲେ । ଫଳରେ କଲେଜରୁ ରଷ୍ଟିକେଟ ହୋଇ ବି.ଏସ. ସି. ପରୀକ୍ଷା ଦେଇପାରିନଥିଲେ । ପୋଲିସ ଦାଉରୁ ରକ୍ଷା ପାଇବା ପାଇଁ ତାଙ୍କ ବଂଧୁ ପ୍ରେମଜୀ ମ୍ୟାଓାନଙ୍କ ପରାମର୍ଶ କ୍ରମେ କରନୋଧିଆନ ଥିଏଟରରେ ସେ ପ୍ରଥମେ ଲାଇଟମ୍ୟାନ, ପରେ ଯନ୍ତ୍ରଶିଳ୍ପୀ ଓ ଶେଷରେ ଅଭିନେତା ସାଜି ନିଜର ଅଜ୍ଞାତବାସ ପୂର୍ଣ୍ଣ କରିଥିଲେ । ଏହି ଅଜ୍ଞାତବାସରୁ ବିଖ୍ୟାତ ଅନୁଭବ ତାଙ୍କୁ ଉତ୍କଳ ମାଟି ର ଉତ୍କଳ ଗନ୍ଧର୍ବ ଭାବେ ଆଦରି ନେଇଛି । ସେଠି ସେ ବହୁ ବାଦ୍ୟ ଯନ୍ତ୍ର ଶିଖିନେଇ ଅଭିନୟ କଳା ଶିଖିଲେ । ମଂଚ ପରିଚାଳନାଠାରୁ ସାହିତ୍ୟ ଲେଖା ଯାଏଁ ଅନେକ ଅଛି । ଭବିଷ୍ୟତ ର ଉତ୍କଳ ଗନ୍ଧର୍ବ ଓ କବି ମଂଜୁଳ ର ଏ ଥିଲା ପ୍ରସ୍ତୁତିଶାଳା ।

ଚାରଣ କବି ମୁକୁନ୍ଦ ଦାଶ ଓ ମୋତିଲାଲ ରାୟଙ୍କ ଠାରୁ ଦୁଇଟି ବିଶିଷ୍ଟ କଥା ଶିଖି ଓଡିଶା ଆସିଥିଲେ । ଓଡିଆ ଯାତ୍ରାର ଆଧୁନିକୀକରଣ ସହ ଯାତ୍ରା ମାଧମରେ ଦେଶପ୍ରେମ ସୃଷ୍ଟି କରିବା କଥା ଓ ଦ୍ୱିତୀୟଟି ଆଧୁନିକ ଜୀବନ, ସମାଜ ଓ ସାମାଜିକ ପୃଷ୍ଠଭୂମି ଉପରେ ସଂଗୀତ ଲେଖି ନିଷ୍ପୃହ ଓଡିଆମାନଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରାଇବା । ବଂଗଳା ନାଟକର ଆଧୁନିକ ଗୁଣ ସହିତ ଓଡିଶା ଯାତ୍ରାର ଶାସ୍ତ୍ରୀୟ ଓ ଲୋକ ଶୈଳୀକୁ ସମୀକରଣ କରିବା ଗୁଣରେ କୃଷ୍ଣପ୍ରସାଦ ଜଣେ କଳାକାର । ସେ ୧୯୧୬ ମସିହାରେ ସତେ ଯେପରି ସାଂସ୍କୃତିକ ତାଲିମପାଇ ବଂଗରୁ ଫେରିଲେ ।

କୃଷ୍ଣପ୍ରସାଦ ବସୁ ଓଡିଆ ଯାତ୍ରାର ଅସୁବିଧା କେଉଁଠି ରହୁଛି ତାହା ଅନୁଧାନ କରି କେତେକ ସଂସ୍କାର ଯାତ୍ରାରେ ଆଣିଲେ ।

କ) ଓଡିଆ ଯାତ୍ରାରେ ରାସ, ସୁଆଙ୍ଗ, ଲୀଳା ପରି ସଙ୍ଗୀତର ମାତ୍ରାଧିକ ବ୍ୟବହାର ଓ ସଂଗୀତମୟ କଥୋପକଥନ, ଗଦ୍ୟ ସଂଳାପର ପୂର୍ଣ୍ଣ ଅଭାବ ଆଦିକୁ ସଂସ୍କାର କରିବାକୁ ଚେଷ୍ଟା କଲେ ।

ଖ) ଓଡିଆ ଯାତ୍ରାରେ ବେହେଲା, କ୍ଲାରିଓନେଟ ପରି ଆଧୁନିକ ବାଦ୍ୟଯନ୍ତ୍ର ବ୍ୟବହାର କରାଯାଉନଥିଲା ।

ଗ) ପାତ୍ର ଅନୁସାରେ ପୋଷାକ ପତ୍ରର ବ୍ୟବହାର କରାଯାଉନଥିଲା ରୂପସଜ୍ଜା ପାଇଁ ଯାତ୍ରା ଅଭିନେତାମାନେ ବିଶେଷ ଗୁରୁତ୍ୱ ନେଉନଥିଲେ । କଲିକତା ଥିଏଟର ପାର୍ଟିରେ ବ୍ୟବହୃତ ପୋଷାକ, ଅଳଙ୍କାର ଆଦିକୁ ଯାତ୍ରା ଦଳରେ ପ୍ରଚଳନ ସେ କରାଇଥିଲେ । ନାରୀ ଭୂମିକାରେ ଅଭିନୟ କରୁଥିବା ଓଡିଆ ଯାତ୍ରାକାରମାନେ ମୁଣ୍ଡରେ ବାଳଲମ୍ୱା ରଖି ବର୍ଷସାରା ହନ୍ତସନ୍ତ ହେଉଥିଲେ । ବସୁ ନାରୀ ଭୂମିକା ପାଇଁ କେଶ ପ୍ରସାଧନର ଆଧୁନିକ ଉଠାକେଶର ପ୍ରଚଳନ କରିଥିଲେ । ମଂଚସଜ୍ଜା, ରୂପସଜ୍ଜା ସହ ମଂଚ ପରିଚାଳନା, ଆଲୋକ ସମ୍ପାତ ଆଦି କ୍ଷେତ୍ରରେ ସେ ପ୍ରଥମ ପ୍ରବକ୍ତା ।

ତାଙ୍କ ମନର ଉପରୋକ୍ତ ଯୋଜନାକୁ ବାସ୍ତବ ରୂପଦେବା ପାଇଁ, ଯାଜପୁର ଅଞ୍ଚଳରେ ଥିବା କଳାକାର, ବାଦ୍ୟକାରଙ୍କୁ ତାଲିମ ଦେବାପାଇଁ ଭୋଗ ମାଧବ ଗ୍ରାମର ଶ୍ରୀ ଗୋବିନ୍ଦଜୀଉଙ୍କ ଦେହୁଡୀରେ ଆଖଡା ଘର ସ୍ଥାପନ କଲେ । ତାପରେ ସେ ବିରଜା ଅପେରା ନାମକ ଯାତ୍ରା ଦଳ ଗଠନ କଲେ । ସୌଖିନ ମଂଚକୁ ବ୍ୟବସାୟିତ ମଂଚରେ ପରିଣତ କରି ୪/୫ ବର୍ଷ ମଧରେ ସାରା ଓଡିଶାରେ ବିଖ୍ୟାତ ହୋଇଗଲେ । ନିଜେ ନାଟ୍ୟକାର, ନିଜେ ନିର୍ଦ୍ଦେଶକ, ଅଭିନେତା, ସଂଗୀତକାର ବାଦକ, ଗାୟକ ସବୁ କିଛି । ସେ ଯେପରି ଗୋଟିଏ ଅନୁଷ୍ଠାନ, ବିରଜା ଅପେରା ର ବିଶେଷତ୍ୱ ହେଲା ମନୋରଂଜନ ସହିତ ଦେଶ ପ୍ରେମ ଭାବ ଜନମାନସରେ ସୃଷ୍ଟି କରିବା । ସ୍ୱଦେଶୀ ଆନ୍ଦୋଳନର ନେତାଙ୍କ ସହିତ ତାଙ୍କର ଯୋଗାଯୋଗ ସବୁବେଳେ ଥାଏ । ନାଟକ ମଧରେ କବି ନିଜେ ମଂଚ ଉପରକୁ ଉଠି ଜାତୀୟଭାବ ସୃଷ୍ଟିକାରୀ ସଂଗୀତ ପରିବେଷଣ କରୁଥିଲେ । ବ୍ରିଟିସ ବିରୋଧି ସଂଗୀତ ଗାନ ବିରଜା ଅପେରା ର ଏକ ବିଶେଷ ଗୁଣ ଥିଲା । ବିଦେଶୀ ସରକାର ବସୁଙ୍କର ଏପରି କାର୍ଯ୍ୟକୁ ବନ୍ଦ କରିବା ପାଇଁ ତାଙ୍କୁ ସବ ଇନସ୍‌ପେକ୍ଟର ଚାକିରୀ ଯାଚିଲେ କିନ୍ତୁ ବସୁ ମନାକଲେ । ସମ୍ଭବତଃ ଏହି ଘଟଣାରୁ ତାଙ୍କ ପରିବାରରେ ଅଶାନ୍ତି ସୃଷ୍ଟି ହୋଇଥିଲା ଓ ବିରଜା ଅପେରା କୁ ବନ୍ଦ କରିଦେଇ ବସୁ କଲିକତା ପଳାଇଲେ । ପରେ ୧୯୨୩ ମସିହାରେ ଭଦ୍ରଖଠାରେ ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ରଙ୍କ ସହାୟତାରେ ଶ୍ୟାମସୁନ୍ଦର ଥିଏଟର ଗଢିଲେ ଗୃହତ୍ୟାଗ ଜୀବନ କାଳରେ ସେ କଲିକତାର ଭୂୟାଁ ଭାସ୍କର ମହାପାତ୍ର ଙ୍କ ନିକଟରେ କାମ କରିଥିଲେ । ବିରଜା ଅପେରା ପରି ଶ୍ୟାମସୁନ୍ଦର ଥିଏଟର । ଓଡିଶା ଓ ପ୍ରତିବେଶୀ ରାଜ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କଲା । ଏ ଥିଏଟର ମାଧମରେ କୃଷ୍ଣପ୍ରସାଦ ଡଃ ହରେକୃଷ୍ଣ ମହତାବଙ୍କ ସଂସ୍ପର୍ଶରେ ଆସିଥିଲେ । ମହତାବଙ୍କ ପ୍ରେରଣାରେ କୃଷ୍ଣବାବୁ ବହୁ ଦେଶାତ୍ମବୋଧ ଗୀତ ଲେଖି ସ୍ୱର ଦେଇ ଯାତ୍ରା ମାଧମରେ ଓଡିଶାର ଜନମତକୁ ଜାଗ୍ରତ କରାଉଥିଲେ । ତାଙ୍କ ଅଭିମାନୀ ପିତା ପୁତ୍ରର ଏ ପ୍ରକାର କୃତିତ୍ୱରେ

ଆନନ୍ଦିତ ହୋଇ ତାଙ୍କ ପିତା କୃଷ୍ଣବାବୁଙ୍କୁ ଶାନ୍ତ କରାଇ ଘରକୁ ଫେରାଇ ନେଇଥିଲେ ଓ
ଅନୁଭବ କରିଥିଲେ ଯେ ତାଙ୍କ ପୁଅ ଏତେ ପାଠ ପଢି ନାଟୁଆ ଟିଏ ହୋଇନି ବରଂ
ଜନ୍ମମାଟି ପାଇଁ ତାର ଅତୁଳନୀୟ ଯୋଗଦାନ ରହୁଛି । ସେ ବସୁଙ୍କୁ ଉତ୍ସାହିତ କଲେ ଓ
ବିରଜା ଅପେରା ପୁଣି ଥରେ ଓଡିଶା ମାଟିରେ ସ୍ୱଗର୍ବେ ମୁଣ୍ଡ ଟେକିଲା । ତାର ସମୟ
ଥିଲା ୧୯୨୮ କିମ୍ବା ୧୯୨୯ ମସିହା ବସୁ ଓଡିଆ ଯୁଗପୋଯୋଗୀ ନାଟକର ଅଭାବ
ପରିଲକ୍ଷିତ କରି ଗଦ୍ୟ ସଂଳାପ ସଂଯୋଜନା କରି ବିରଜା ଅପେରା ପାଇଁ ଲେଖିଲେ ଓ
ନିଜେ ସଂଗୀତ ନିର୍ଦ୍ଦେଶକ ସାଜି ବେହେଲା ଓ କ୍ଲାରିଓ ନେଟର ପ୍ରଚଳନ କଲେ କିନ୍ତୁ
ବିରଜା ଅପେରାର ବିଶେଷତ୍ୱକୁ କାଏମ ରଖିଲେ । ଆବଶ୍ୟକ ଥାଇ ନଥାଇ ବସୁ ମହାଶୟ
ଜବରଦସ୍ତ ମଝିରେ ପଶି ଦେଶପ୍ରେମ ଗୀତ ଗାଇବେ । ଦର୍ଶକଙ୍କର ଦାବୀ ମଧ୍ୟ ଥିଲା ଯେ
ବସୁଙ୍କ କଂଠରୁ ଗୋଟିଏ ରାତିରେ ୨/୪ ଟି ଦେଶାତ୍ମବୋଧ ଗୀତ ଶୁଣିବେ । ପୋଲିସର
ଭୟ ମଧ୍ୟ ଲାଗି ରହିଥାଏ ।

ବିରଜା ଅପେରା କେବଳ ଯାତ୍ରା ଆନ୍ଦୋଳନର ଅଗ୍ରଦୂତ ନଥିଲା ବରଂ ଏହା
ସ୍ୱାଧୀନତା ସଂଗ୍ରାମର ତୂର୍ଯ୍ୟନାଦରେ ଓଡିଶାକୁ ପ୍ରକମ୍ପିତ ସେଦିନ କରିଦେଇଥିଲା
ଦୁର୍ଭାଗ୍ୟକ୍ରମେ ଆକସ୍ମିକ ଅଗ୍ନିକାଣ୍ଡରେ ଚମ୍ପୁଆଠାରେ ବାଦ୍ୟଯନ୍ତ୍ର, ବେଶ ପୋଷାକ ଆଦି
ଅପେରାର ସମସ୍ତ ଦ୍ରବ୍ୟ ଭସ୍ମୀଭୂତ ହୋଇଥିଲା । ସାମୟିକ ଭାବେ ଅପେରା ବନ୍ଦ ରହିଲା
ଓ ବସୁ ମହାଶୟ ଗଞ୍ଜାମର ଆସ୍କା ଓ ବ୍ରହ୍ମପୁରରେ ଓଡିଶାର କୃତବିଦ୍ୟମାନଙ୍କ ସହଯତାରେ
ନାଟ୍ୟମନ୍ଦିର ପ୍ରତିଷ୍ଠା କରି ଅଭିନୟ ଧାରା ଚାଲୁ ରଖିଲେ ଓ ସଫଳତା ଲାଭ କଲେ ।
ପରେ ସରକାରୀ ସାହାଯ୍ୟ ପାଇ ୧୯୪୨ ପର୍ଯ୍ୟନ୍ତ ବିରଜା ଅପେରା । ଚାଲିଥିଲା ଦ୍ୱିତୀୟ
ମହାଯୁଦ୍ଧ ଫଳରେ ଭାରତରେ ନିଷ୍ପ୍ରଦୀପ ପାଳିତ ହେବାରୁ ବିରଜା ଅପେରା ବନ୍ଦ
ହେବାକୁ ବାଧ ହେଲା ଜଣେ ଆଦର୍ଶ ନାଟ୍ୟ ସଂଗଠକ ଭାବେ ସେ ବିରଜା ଅପେରାର
ନାଟ୍ୟକର୍ମୀ ମାନଙ୍କର ସହାୟତା କରି ବିଭିନ୍ନ ସ୍ଥାନରେ ତାଙ୍କୁ ନିଯୁକ୍ତିମାନ ପାଇବାରେ
ମଧ୍ୟ ସାହାଯ୍ୟ କରିଥିଲେ । ୧୯୨୬ ଠାରୁ ( his master's voice) ରେକର୍ଡିଂ
କମ୍ପାନୀର ଟ୍ରେନର ଭାବେ ନିଯୁକ୍ତି ପାଇଁ ଓଡିଶାର ବହୁ ସଂଗୀତ ଶିଳ୍ପୀଙ୍କ ଗ୍ରାମଫୋନ
ରେକର୍ଡ କରାଇଥିଲେ । ବସୁ ମଧ୍ୟ ନିଜେ କେତେକ ରେକର୍ଡରେ ଗାଇଥିଲେ । ତାଙ୍କ ନିଜ
ରଚନା ଗୁଡିକୁ ନିଜେ ସ୍ୱର ଦେଇ, ସଂଗୀତ ଦେଇ ବହୁ ନୂଆ ଓ ପୁରୁଣା କଳାକାରମାନଙ୍କୁ
ଆଲୋକକୁ ଆଣିଥିଲେ । ନିମାଇଁ ଚରଣ ହରିଚନ୍ଦନ, ଗୋକୁଳାନନ୍ଦ ମହାନ୍ତି , ମିସ୍,
ତୋଫା ଲକ୍ଷ୍ମୀଧର ସାହୁ, ପ୍ରତିମାରାୟ ଚୌଧୁରୀ, ନିତ୍ୟାନନ୍ଦ ରାଉତ ଆଦିଙ୍କ ସଂଗୀତ
ବସୁ ମହାଶୟଙ୍କ ସଂଗୀତ ଜଗତର ଅନନ୍ୟ ପ୍ରତିଭା । ସେହିପରି ରେକର୍ଡ କମ୍ପାନୀ ଦ୍ୱାରା

ତାଙ୍କ ରଚିତ, ନିର୍ଦ୍ଦେଶିତ ଓ ଅଭିନୀତ ବାମନାବତାର ଓ ଧ୍ରୁବ ଚରିତ ଆଦି ନାଟକ ଖୁବ୍ ଲୋକପ୍ରିୟ ହୋଇଥିଲା । ତାଙ୍କ ସଂଗୀତ ମଧ୍ୟରୁ ବହୁ ଅପ୍ରକାଶିତ ହୋଇ ଓଡିଶାର ବହୁ ପୁରାତନ ଶିଳ୍ପୀଙ୍କ କଂଠ ରହି ଆସିଛି । ପ୍ରାୟ ୨୦୦୦ ରୁ ଅଧିକ ଗୀତ ସେ ଲେଖିଥିଲେ ଓ ତାଙ୍କର ଦେଶାତ୍ମବୋଧ ସଂଗୀତ ଗୁଡିକୁ ପୋଲିସ ଜବତ କରି ନେଇଥିବାରୁ ତାହା ଏବେ ମିଳୁନାହିଁ । ତାଙ୍କର ଲୋକପ୍ରିୟ ସଂଗୀତ ମଧ୍ୟରେ ମା ବିରଜାଙ୍କ ବନ୍ଦନା

"ବୈତରଣୀ ବାରି ବହୁଳାତଟେ
ବିନ୍ଧ୍ୟ ବାସିନୀ ବିରଜା
ସାରା ଉତ୍କଳର ଶୂଳ ଧାରିଣୀ
ରକ୍ଷା କରୁଛୁ ପରଜା

ଓ

ମୁଁ ସିନା ଜାଣେନି ପ୍ରେମ କି ଦରବ
ତୁମେତ ପ୍ରେମିକ ନାଗର
ମୁଁ ସିନା ଜାଣେନି ସେବା ପୂଜା ବିଧି
ତୁମେତ ପରଶ ପଥର ହେ ।

ଆଦି ଖୁବ୍ ଲୋକପ୍ରିୟ । ସଂଗୀତ କ୍ଷେତ୍ରରେ ସେ ଥିଲେ ଜଣେ ଅଭିଜ୍ଞ ଶିଳ୍ପୀ ଓ ସଫଳ ଗୀତିକାର । ସଂଗୀତଜ୍ଞ ଗୀତିକାର ବସୁ ମହାଶୟ ଆଶୁ କବି ଥିଲେ ଓ ତାଙ୍କ ବାଦ୍ୟଯନ୍ତ୍ର ସହିତ ସ୍ୱର ମିଳାଇ ଗୀତ ରଚନା କରୁଥିଲେ । ଗୀତିକାର ଓ ସଂଗୀତଜ୍ଞ ବସୁଙ୍କଠାରୁ ସହସ୍ରାଧିକ କବିତା ଆତ୍ମପ୍ରକାଶ କଲେ । ଗୀତ ଲେଖିବେ, ସ୍ୱର ଦେବେ, ନିଜେ ଗାଇବେ, ଛାତ୍ରଛାତ୍ରୀମାନଙ୍କୁ ଶିଖାଇବେ, ଦର୍ଶକମାନଙ୍କ ଆଗରେ ପରିବେଷଣ କରିବେ ତା ପରେ ଯାଇଁ ସେ ପୂର୍ଣ୍ଣତା ଅନୁଭବ କରିବେ । ପରୀକ୍ଷା-ନିରୀକ୍ଷା ମଧ୍ୟରେ ସେ ସଂଗୀତ ଗୁଡ଼ିକର ସୃଷ୍ଟି ହୋଇଥବାରୁ ସେ ଗୁଡିକ ପ୍ରାୟ ନିର୍ଦ୍ଦୋଷ ଥିଲା ଓ ଜନପ୍ରିୟ ଥିଲା । ପାଇବା ପାଇଁ ତାଙ୍କର ବ୍ୟସ୍ତତା ନଥିଲା । ତାଙ୍କର ସୁନ୍ଦର କଂଠ, ଅଭିନେତା ସୁଲଭ ଚେହେରା ଓ ଅଭିନୟର ପଟୁତା ସର୍ବୋପରି କଳାପାଇଁ ନିଷ୍ଠା ତାଙ୍କୁ ଅଧିକ ଜନପ୍ରିୟ ଓଡିଶାରେ କରିଥିଲା । ସେ ନିଜ ନାଟକରେ ମୁଖ୍ୟ ଭୂମିକାରେ ପ୍ରାୟ ଅଭିନୟ କରୁଥିଲେ । ଗୟାସୁର, ରାବଣ, ଯଯାତିକେଶରୀ, ଚାରୁଦତ୍ତ ଉତ୍ତାନପାଦ ଭୂମିକାରେ ଅଭିନୟ ଏବେ ମଧ୍ୟ ଓଡିଶାରେ ଏକ କିମ୍ବଦନ୍ତୀ ହୋଇ ରହିଛି । ୧୯୪୨ ଠାରୁ ବିରଜା ଅପେରା ବନ୍ଦ ହେବାପରେ ସେ ଗୁଣଗ୍ରାହୀ ରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ (ବଲାଙ୍ଗୀର) ଙ୍କ

ନିମନ୍ତ୍ରଣ କ୍ରମେ ପୃଥ୍ୱୀରାଜ ହାଇସ୍କୁଲର ସଂଗୀତ ଶିକ୍ଷକଭାବେ ବହୁ ଛାତ୍ର ଛାତ୍ରୀ ସୃଷ୍ଟି କରିପାରିଲେ ୧୯୪୨ ର ୧୯୪୫ ଯାଏଁ ସେଠାରେ ଅବସ୍ଥାନ କରୁଥିଲେ । ପରେ ୧୯୪୬ ରେ ବାଲେଶ୍ୱର ବସ୍ତା ହାଇସ୍କୁଲର ବିଜ୍ଞାନ ଶିକ୍ଷକ ଭାବେ, ୧୯୪୭ ରେ ଯାଜପୁର ହାଇସ୍କୁଲର ବିଜ୍ଞାନ ଶିକ୍ଷକ ଓ ୧୯୫୫ ରେ ସେ ବିରଜା ହାଇସ୍କୁଲର ବିଜ୍ଞାନ ଶିକ୍ଷକ ପଦରୁ ଅବସର ନେଲେ । ନାଟ୍ୟ ସଂଗୀତ କମ୍ ଥିଲା ତାଙ୍କର ନିଶା ଶିକ୍ଷକତା ପେଷା । ସେତେବେଳେ ଓଡିଶାର ପାରମ୍ପରିକ କଳା ପାଲ୍ଲା ର ଏକ ସମସ୍ୟା ତାଙ୍କ ଦୃଷ୍ଟି ଆକର୍ଷଣ କଲା । ପାଲା ଗାୟକ ମାନଙ୍କୁ ବହୁଶାସ୍ତ୍ର ଅଧ୍ୟୟନ କରି ବିଷୟବସ୍ତୁ ନିର୍ବାଚନ ସହ ମଧ୍ୟଯୁଗୀୟ ଓ ସଂସ୍କୃତ ସାହିତ୍ୟର ବର୍ଣ୍ଣନା । ପରିପାଟିକୁ ସଂଯୋଜନା କରିବାକୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡୁଥିଲା ବସୁ ମହାଶୟ ସେମାନଙ୍କର ଏ ସମସ୍ୟା ଦୂର କରିବା ପାଇଁ ପାଲାଗାୟକମାନଙ୍କ ପାଇଁ ବହୁ ଖଣ୍ଡକାବ୍ୟ ରଚନା କଲେ ଓ ଆଶ୍ଚର୍ଯ୍ୟଜନକ ଭାବେ ତାଙ୍କ ରଚନାଗୁଡିକ ଓଡିଶାରେ ଖୁବ୍ ଲୋକପ୍ରିୟ ହୋଇଉଠିଲା । ଏ କ୍ଷେତ୍ରରେ ସେ ଓଡିଶାର କବିମାନଙ୍କ ମଧ୍ୟରେ ଆଦ୍ୟସୁରୀ ହେବାର ଗୌରବ ଅର୍ଜନ କରିଛନ୍ତି । ପାଲାଗୁଡିକ ତାଙ୍କର ପରିଣତ ବୟସର ରଚନା ଏ ରଚନା ପଛରେ ଜଣେ ସଂଗୀତଜ୍ଞ, ଅଭିନେତା, ନାଟ୍ୟକାର ଓ ବିଜ୍ଞ ମଣିଷର ଅପୁରନ୍ତ ଅଭିଜ୍ଞତା ନିହିତ ତେଣୁ ଏଗୁଡିକ ଲୋକପ୍ରିୟ ଓ ପାଣ୍ଡିତ୍ୟପୂର୍ଣ୍ଣ ହେବା ସ୍ୱାଭାବିକ । ସେ ତାଙ୍କ ଜୀବନକାଳ ମଧ୍ୟରେ ଖାସ ପାଲାଗାୟକ ମାନଙ୍କ ପାଇଁ ୩୬ ଖଣ୍ଡ ଖଣ୍ଡକାବ୍ୟ ଲେଖିଥିଲେ । ସତେ ଯେପରି ତାଙ୍କ ଲେଖନୀରୁ ଚିରସ୍ରୋତା ହିମାଦ୍ରୀ ସ୍ରୋତ ସଂଗୀତ ରୂପେ ଅବିରତ ପ୍ରବାହିତ ହେଉଥିଲା । ସେଗୁଡିକ ମଧ୍ୟରୁ ତ୍ରିବିକ୍ରମ, ନିକୁମ୍ଭିଲା , ବ୍ରାହ୍ମଣ, ହରିଶ୍ଚନ୍ଦ୍ର, ଛତ୍ରପତି ଶିବାଜୀ, ଦେବବ୍ରତ, ନିମାଁଇ ସନ୍ୟାସୀ, ମାତୃପୂଜା, ହିମାଦ୍ରି ଜେମା, ଗାନ୍ଧୀଚରିତ /ପ୍ରଭାସ ଯଜ୍ଞ, ଖାଣ୍ଡବ ଦହନ, ଅଛୁଆ ଝିଅ ବହୁ ଲୋକପ୍ରିୟତା ହାସଲ କରି ଏବେ ମଧ୍ୟ ଓଡିଶାର ପାଲା ଜଗତରେ ବଂଚି ରହିଛି । ପୌରାଣିକ ଐତିହାସିକ ଓ ସାମାଜିକ ବିଷୟବସ୍ତୁ ଉପରେ ସେ ପାଲା ରଚନା କରିଯାଇଛନ୍ତି । ସର୍ବମୋଟ ୨୩ଟି ଯାତ୍ରା ନାଟକ ସେ ଲେଖିଛନ୍ତି, ବିରଜା ଅପେରା । ଶ୍ୟାମସୁନ୍ଦର ଥିଏଟର ବ୍ୟତୀତ ନାନାଦି ସୌଖିନ ଅଭିନୟ ଜଗତରେ ଏଗୁଡିକ ଖୁବ୍ ଲୋକପ୍ରିୟ । ତାଙ୍କ ନାଟକ ମଧ୍ୟରେ ଯଯାତି କେଶରୀ, ଗୟାସୁର ବଧ ଶକୁନ୍ତଳା, ଦକ୍ଷଯଜ୍ଞ, ଅଛୁଆଁ ଝିଅ, ରମାଇ ଦେଓ, ଭୂୟାଁପୀଢ, ନିମାଇଁ ସନ୍ୟାସୀ ମେଘନାଦ ବଧ, ବାମନାବତାର, ରୋସେନା ଓ ସମାନ, ବଲ୍ମିମଂଗଳ ଆଦି ଖୁବ୍ ପାଣ୍ଡିତ୍ୟପୂର୍ଣ୍ଣ ଓ ରୁଚିପୂର୍ଣ୍ଣ । ମିଠା ମହୁରା, ରୋସାନ ଓ ସମାନ, ଅଛୁଆଁ ଝିଅ, ଭୂୟାଁପୀଢ ଆଦି ସାମାଜିକ ନାଟକ, କବିଙ୍କ ରଚିତ ଭୂୟାଁପୀଢ ନାଟକଟି ଗଡଜାତର ପ୍ରଜା ଆନ୍ଦୋଳନକୁ ନେଇ ରଚିତ ।

ଏଥିରେ ବ୍ରିଟିସ ବିରୋଧି ମନୋଭାବ ଓ ବିଦ୍ରୋହାତ୍ମକ ଉଦ୍‌ବୋଧନ ଥିବାରୁ ସରକାରଙ୍କ ଦ୍ୱାରା ଏହକୁ ଓ ଏହାର ଅଭିନୟକୁ ବେଆଇନ ବୋଲି ଘୋଷଣା କରାଯାଇଥିଲା । ଗୀତିକବିତା, ନାଟକ ଓ ପାଲା ପାଇଁ ଖଣ୍ଡ କାବ୍ୟ ରଚନା ସହିତ ବସୁ ମହାଶୟ ରମ୍ୟରଚନାର ଜଣେ ସଫଳ ସ୍ରଷ୍ଟା ଭାବେ ଓଡିଆ ସାହିତ୍ୟରେ ସୁବିଦିତ । ଫକୀର ମୋହନ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପରେ କୃଷ୍ଣ ପ୍ରସାଦ ବସୁ ତାଙ୍କ ରମ୍ୟ ରଚନା ଅଖଡା ଘରେ ବୈଠକ । ପାଇଁ ସୁପରିଚିତା ଡଃ ମାୟାଧର ମାନସିଂହ ଅନୁରୋଧ କ୍ରମେ ସେ ଚତୁରଂଗ ପତ୍ରିକ ପାଇଁ କିଛି ଲେଖିଥିଲେ । ମାନସିଂ ଏ ଆଖଡା ଘର ମଣିଷଟିର ଅଭିଜ୍ଞତାକୁ ଓଡିଆ ସାହିତ୍ୟରେ ପରିବେଷଣ ପାଇଁ ଅନୁରୋଧ କରିଥିଲେ । ବସୁ ମହାଶୟ ଅଖଡାଶାଳ ବିବରଣୀ ଲେଖୁଁ ଲେଖୁଁ ସେଥିରେ ତାଙ୍କର ବୈଚିତ୍ର୍ୟମୟ ଅନୁଭବ, ଦୁଃଖ ସୁଖ ସମାଜ ଚେତନାକୁ ଏପରି ପ୍ରାଣବନ୍ତ ଗଦ୍ୟଶୈଳୀରେ ପ୍ରକାଶ କରିଥିଲେ ଯେ ଡଃ ହରେକୃଷ୍ଣ ମହତାବ ଝଂକାର ପତ୍ରିକାରେ ୧୯୬୭ ମସିହା ପର୍ଯ୍ୟନ୍ତ ପ୍ରକାଶ କରୁଥିଲେ । ସେହିପରି ଆସନ୍ତା କାଲି ଓ ସମାବେଶ ପରି ପ୍ରତିଷ୍ଠିତ ପ୍ରତ୍ରିକାରେ ଫଗୁଆ ବୁଟି ଓ ମାମୁଁ, ନାମକ ୨ଟି କ୍ଷୁଦ୍ର ଉପନ୍ୟାସ ଛପାଇଥିଲେ ଡଃ କୁଳମଣି ଜେନାଙ୍କ ଅଗ୍ରଦୂତ ପ୍ରତିକାରେ ନାନାନିଧି, ଧର୍ମକଥା ପିତା ଲାଗେ କାହିଁକି । ନାମରେ ୨ଟି ପ୍ରବନ୍ଧ ପ୍ରକାଶ କରିଥିଲେ । ଯାତ୍ରା, ଗୀତି କବିତା, ପାଲା ପ୍ରବନ୍ଧ, ଉପନ୍ୟାସ, ଦେଶାତ୍ମବୋଧକ ଗୀତ, ରମ୍ୟ ରଚନା, ଅନୁବାଦ ସବୁ ବିଭାଗରେ ସେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇଛନ୍ତି । ୨୦୦୦ ରୁ ଅଧିକ ସଂଗୀତର କବି ବସୁଙ୍କ ସଂଗୀତ ସଂକଳନ ମଧ୍ୟରେ ଫୁଲହାର ୨ ଖଣ୍ଡ, ପ୍ରାସାଦ ଗୀତାବଳୀ, ଅଳକାନନ୍ଦ, ପ୍ରସାଦ ପଦ୍ୟାବଳୀ ଓ ପରିକଳ୍ପନା, ସଂଗୀତ ଫୁଲହାରରେ ପ୍ରକାଶିତ ସଂଗୀତ ବ୍ୟତୀତ ତାଙ୍କ ଛାତ୍ରମାନଙ୍କ ସ୍ମୃତିରେ ବସୁ ମହୋଦୟଙ୍କ ଅଜସ୍ର ସଂଗୀତ ଏବେ ବି ଲୁଚି ରହିଛି । ସେ ଆଶୁ କବି ୧୯୬୮ ମସିହା ଅଗଷ୍ଟ ୧୮ ତାରିଖ ଦିନ ତାଙ୍କର ମହାପ୍ରୟାଣ ହୋଇଥିଲା ।

କୃଷ୍ଣପ୍ରସାଦ ବସୁଙ୍କୁ ଆଳିର ଗୁଣଗ୍ରାହୀ ରାଜା ବ୍ରଜସୁନ୍ଦର ଦେବ ୧୯୩୯ ମସିହାରେ କବିମଂଜୁଳ । ଉପାଧିଟି ଦେଇଥିଲେ । ସେହିପରି ମୟୁରଭଞ୍ଜର ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ବସୁଙ୍କ ନାଟ୍ୟ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ ଉତ୍କଳ ଗନ୍ଧର୍ବ । ଉପାଧି ଦେଇଥିଲେ । କବି ମଂଜୁଳ ଉପାଧିଟି ଓଡିଶାରେ ଖୁବ୍ ଲୋକପ୍ରିୟ କିନ୍ତୁ ଉତ୍କଳ ଗନ୍ଧର୍ବ । ଉପାଧି ତାଙ୍କ ପ୍ରତିଭାର ଏକ ଯଥାର୍ଥ ମୂଲ୍ୟାୟନ । ଓଡିଶା ନାଟ୍ୟ ପ୍ରେମୀ, ସାହିତ୍ୟ ପ୍ରେମୀ ଓ ସଂଗୀତ ପ୍ରେମୀଙ୍କ ଅନ୍ତରରେ ଚିର ଅମର କୃଷ୍ଣପ୍ରସାଦ ବସୁ ସବୁ ଉପାଧିର ଉର୍ଦ୍ଧ୍ୱରେ ଏକ ସାଂସ୍କୃତିକ ସମ୍ରାଟ ଭାବେ ସେ କେବଳ ଯାଜପୁର ଗୌରବ ନୁହଁନ୍ତି ଓଡିଆ ସଂସ୍କୃତିର

ସହାୟକ ଗ୍ରନ୍ଥ : କବିମାନଙ୍କର କୃଷ୍ଣପ୍ରସାଦ ଗ୍ରନ୍ଥାବଳୀ (୧ମ ଖଣ୍ଡ)

୧. ସଂପାଦନା - ଅଧ୍ୟାପକ ଶ୍ରୀ କୁଳମଣି ଜେନା

୨. ଯୁଗେ ଯୁଗେ ନାଟ୍ୟ ସାହିତ୍ୟ - ବୀର କିଶୋର ଦାସ

୩. ଆଧୁନିକ ଓଡିଆ ସାହିତ୍ୟର ଇତିହାସ - ଡଁ ଜାନକୀ ବଲ୍ଲଭ ମହାନ୍ତି



# ଶିଶୁ ସାହିତ୍ୟିକ : ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ

ସାଧାରଣତଃ ଶିଶୁ ସାହିତ୍ୟ କହିଲେ ଶିଶୁମାନଙ୍କ ପାଇଁ ରଚିତ ସାହିତ୍ୟ କୁ ହିଁ ବୁଝାଇଥାଏ । ଏହାର ଲେଖକ କେବଳ ଶିଶୁମାନେ ହେବା ଏକାନ୍ତ ଭାବେ ଜରୁରୀ ନୁହେଁ । ଶିଶୁ ମାନଙ୍କ ପାଇଁ ବୟସ୍କ ମାନଙ୍କ ଦ୍ୱାରା ରଚନାକୁ ଶିଶୁ ସାହିତ୍ୟ ସାଧାରଣତଃ କୁହାଯାଇଥାଏ । ବୟସ୍କ ଲେଖକ ମାନେ ମାନସିକ ସ୍ତରରେ ଶିଶୁ ଭାବନା ରେ ଉଦ୍‌ବୁଦ୍ଧ ନହେଲେ, ଶିଶୁ ମନଲାଖି ସାହିତ୍ୟ ସୃଷ୍ଟି କରିପାରିବେ ନାହିଁ । ଶିଶୁଟିଏ ତା ଭାବନା ରେ ଯାହା ଲେଖିବ, ତାହା ଅନ୍ୟଶିଶୁଙ୍କୁ ଆନନ୍ଦ ଦେବା ଅସହଜ । ତେଣୁ ପାଶ୍ଚାତ୍ୟ ଦେଶ ମାନଙ୍କରେ ବିଶେଷ କରି ଇଂଲଣ୍ଡରେ ଏହାକୁ ସାହିତ୍ୟ ବୋଲି ସମ୍ବୋଧନ କରାଯାଇନାହିଁ । ସମ୍ଭବତଃ Oxford Junior Encyclopedia ରେ ଶିଶୁ ସାହିତ୍ୟ ପରିବର୍ତ୍ତେ, ଶିଶୁପୁସ୍ତକ Children Book ଶବ୍ଦ ବ୍ୟବହୃତ ହୋଇଛି । ଶିଶୁ ମାନଙ୍କ ଦ୍ୱାରା ଲେଖା ଗୁଡିକ ହୁଏତ ଶୈଶବର ଅକପଟ ଭାବ ସହିତ କିଛି ଅର୍ଥଶୂନ୍ୟ କବିତା ବା ଗଳ୍ପ ସୃଷ୍ଟି କରିପାରେ, କିନ୍ତୁ ଅନ୍ୟ ଶିଶୁ ମାନଙ୍କ ଦ୍ୱାରା ଆଦୃତ ହେବା ଏକ କଷ୍ଟକର କାର୍ଯ୍ୟ । ତେଣୁ ସାରା ବିଶ୍ୱରେ ଶିଶୁସାହିତ୍ୟ ଟି ଅଭିଜ୍ଞ ମାନଙ୍କ ଦ୍ୱାରା ସୃଷ୍ଟି ହୋଇ ଆସିଛି ।

ଶିଶୁ ସାହିତ୍ୟ ର ଆଦର ଉନ୍ନତ ଦେଶ ତୁଳନାରେ ଆମ ଦେଶରେ ବହୁତ କମ । ଓଡିଶା କଥା ଆହୁରି ନୈରାଶ୍ୟ ଜନକ । ଓଡିଶା ପାଇଁ ଏହା ଏକ ଅର୍ବାଚୀନ ସୃଷ୍ଟି । ଓଡିଆ ସାହିତ୍ୟ ରେ ବି ଏ ବିଭାଗ ଟି ଚିର ଅବହେଳିତ । କାରଣ ଶିଶୁ ସାହିତ୍ୟିକ ମାନଙ୍କୁ ସାରସ୍ୱତ ମାନ୍ୟତା ମିଳିବା ଅସହଜ । ଓ ଅଭିଭାବକ ମାନେ ଶିଶୁସାହିତ୍ୟ ପୁସ୍ତକ କିଣିବାରେ ବିଶେଷ ଆଗ୍ରହୀ ନୁହଁନ୍ତି । ବହୁ ପ୍ରାଚୀନ କାଳରୁ ଓଡିଶାରେ ନାନାବାୟା ଗୀତ, ଢଗଢମାଳୀ, ଦୋଳିଗୀତ, ପରୀକାହାଣୀ, ଆଦି ଲୋକ ସାହିତ୍ୟ ମାଧ୍ୟମରେ ଶିଶୁମାନଙ୍କର ସାରସ୍ୱତ ମନୋରଂଜନ କରାଯାଉଥିଲା । ଏ ଗୁଡିକ କେଉଁ ଅଜ୍ଞାତ ଲେଖକ ମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିଲା ତାହା ବି ଜାଣିବାର ପଥ ନାହିଁ । ଲୋକ ମୁଖ ଏହା ପୁରୁଷାନୁକ୍ରମେ ବଂଚି ରହିଥିବାରୁ ଏହା ବାରବାର ସଂଶୋଧିତ ରୂପ ଧାରଣ କରୁଥିଲା । ଗଠନ ପରିପାଟୀରେ ବିଭିନ୍ନତା ଦେଖା ଦେଉଥିଲା । ଏଗୁଡିକ ମଧ୍ୟରୁ ଅନେକ କେବଳ ଅର୍ଥଶୂନ୍ୟ, ଅସଂଗତ, ଅବୋଧ୍ୟ ଶବ୍ଦ ଯାଦୁ ମଧ୍ୟରେ ଶିଶୁ ମାନଙ୍କୁ ଆକର୍ଷଣ କରିବାକୁ ସମର୍ଥ ହେଉଥିଲା । ଶିଶୁମାନଙ୍କର ଶୈକ୍ଷିକ ଦିଗ ପ୍ରତି, ଏ ଲୋକ ସାହିତ୍ୟ ଗୁଡିକ ଏତେ ଧ୍ୟାନ ଦେଉନଥିଲା ।

ଲୋକ ସାହିତ୍ୟ ଲୋକମନ ର ସ୍ୱଚ୍ଛନ୍ଦ ଧାରା ରେ ପରିପୁଷ୍ଟ ହେଲେମଧ , ଏହା ଶିଶୁପ୍ରାଣକୁ ପ୍ରଭାବିତ କରି ପାରୁନଥିଲା, ଶିଶୁ ମାନଙ୍କର ବୋଧଗମ୍ୟ ହେଉନଥିଲା ।କେବଳ ବାକ୍‌ଚାତୁରୀ, ସଂଗୀତ, ବିମଳ ହାସ୍ୟରସ ଓ ଛନ୍ଦ ମାଧୁରୀ ରେ ଆମୋଦ ପ୍ରଦାନ କରୁଥିଲା । ବିସ୍ମୟରସ ମାଧ୍ୟମରେ କିଛି ମାଧୁର୍ଯ୍ୟ ସୃଷ୍ଟି କରିବା ବ୍ୟତୀତ ଶିଶୁର ଭାବଚେତନା କୁ ଉଜ୍ଜୀବୀତ କରିବା କଥା ନଥିଲା । oxford Junior Encyclopedia ମତରେ "In its marrower meaning childrens literature consists of the written productions shaped by creative imaginations to entertain and Interest the child. but in its wider and truer sense it embraces all literature, which contains dramatic action, purity and beauty of style and simplicity warmth and sincerity of treatment.

କେବଳ କାଳ୍ପନିକ କୌତୁହଳ ନୁହେଁ, ବରଂ ନାଟକୀୟତା, ଶୁଦ୍ଧତା, ଶୈଳୀ ପାଟବତା, ସରଳତା ଓ ଆନ୍ତରିକତା ହିଁ ଶିଶୁ ସାହିତ୍ୟର ପ୍ରାଣ ।

ଆମ ଓଡିଆ ସାହିତ୍ୟ ରେ ବିଧିବଦ୍ଧ ଭାବେ ଶିଶୁସାହିତ୍ୟ ରଚନା ଆପାତତଃ ଉନବିଂଶ ଶତାବ୍ଦୀର ମଧ୍ୟଭାଗରୁ ଆରମ୍ଭ ହୋଇଥିଲା ।

୧୮୬୬ - ୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଓଡିଆ ଭାଷା ସୁରକ୍ଷା ଆନ୍ଦୋଳନ ପରିପ୍ରେକ୍ଷୀ ରେ ବହୁ ଶିକ୍ଷିତ ଓଡିଆ ମାତୃଭାଷାର ସୁରକ୍ଷା ପାଇଁ, ଏକାନ୍ତ ଭାବେ ପାଠ୍ୟ ପୁସ୍ତକ ଖାତିରିରେ ସାହିତ୍ୟ ପୁସ୍ତକ ମାନ ରଚନା କରିଥିଲେ । ଗୋବିନ୍ଦ ରଥ, ରାଧାନାଥ ରାୟ, ମଧୁସୁଦନ ରାଓ ଫକୀର ମୋହନ ସେନାପତି ଆଦି ପାଠ୍ୟ ପୁସ୍ତକ ନିମ୍ନ ଶ୍ରେଣୀର ପିଲାଙ୍କ ପାଇଁ ଲେଖୁ ଲେଖୁ, ସେମାନଙ୍କ ଉଦ୍ଦେଶ୍ୟ ଆନ୍ତରାଳ ରେ ଓଡିଆ ଶିଶୁସାହିତ୍ୟ ବିଭାଗଟିଏ ସ୍ୱୟଂ ଆତ୍ମପ୍ରକାଶ କରିଥିଲା । କିନ୍ତୁ ବିଧିବଦ୍ଧ ଭାବେ ଶିଶୁ ସାହିତ୍ୟର ସୃଷ୍ଟି ପାଇଁ ଓଡିଆ ସାହିତ୍ୟ କୁ ଦୀର୍ଘଦିନ ଧରି ଅପେକ୍ଷା କରିବାକୁ ପଡିଥିଲା । ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟ ଓ ଅଗଣି ଦାସଙ୍କ ଯୁଗ୍ମ ସଂପାଦନାରେ ଓଡିଶାରେ ୧୮୮୫ ମସିହାରେ ପ୍ରଥମ ଶିଶୁପତ୍ରିକା "ପଞ୍ଚାମୃତ" ଆତ୍ମପ୍ରକାଶ କଲା । କଟକ ଟ୍ରେଡିଂ କମ୍ପାନୀ ରୁ ଏହାର ପ୍ରକାଶନ ୧୮୮୫ ମସିହାରୁ ଆରମ୍ଭ ହୋଇ ୧୯୭୬ ଯାଏଁ ଚାଲି ଆସିଥିଲା । ୧୯୩୧ ମସିହାରେ ବାଳକୃଷ୍ଣ କର ଙ୍କ ସଂପାଦନା ରେ ଜହ୍ନମାମୁଁ, ୧୯୪୬ ରେ ଜାତୀୟ କବି ବୀର କିଶୋର ଙ୍କ "ମୋ ଦେଶ" ଓ ପରକୁ ପର ଅନେକ ଶିଶୁପତ୍ରିକା ପ୍ରକାଶ ପାଇ ଆସିଛି । ସଂସାର, ଶିଶୁ ସମ୍ପଦ, ମୀନାବଜାର, ଶିଶୁଲେଖା, ଟୁଆଁଟୁଇଁ ଆଦି ବହୁ ପତ୍ରିକା ଶିଶୁ ସାହିତ୍ୟ ବିଭାଗ ଟିକୁ ଋଦ୍ଧିମନ୍ତ କରିଛି । ବିଭିନ୍ନ ସାହିତ୍ୟ ପତ୍ରିକା ଓ ଓଡିଆ ସମ୍ବାଦ ପତ୍ର ମାନଙ୍କ ପୃଷ୍ଠାରେ ସ୍ୱତନ୍ତ୍ର ଭାବେ ଶିଶୁବିଭାଗ ମାନ ପରିବେଷିତ ହୋଇ ଏ ଧାରାକୁ

ଗତିଶୀଳ କରିଆସୁଛି । ୧୯୩୬ ରେ ପ୍ରକାଶିତ ଡଗର ପତ୍ରିକାର ନାଗବଚ୍ଛା ବିଭାଗଟି ଶିଶୁ ସାହିତ୍ୟ ର ଏକ ମୁଖ୍ୟ ଆକର୍ଷଣ । ଓଡିଆ ସାହିତ୍ୟର ଶିଶୁ ବିଭାଗ ର କୃତି ସାହିତ୍ୟିକ ମାନଙ୍କ ମଧ୍ୟରେ ଦୀର୍ଘ ପଚାଶବର୍ଷର ଧାରାବାହିକ ଯୋଗଦାନ ଓ କୃତିତ୍ୱ ହାସଲ କରିବା କ୍ଷେତ୍ରରେ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଙ୍କ ଅବଦାନ ଏ ପ୍ରବନ୍ଧରେ ବିଚାର୍ଯ୍ୟ ।

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କ ଜନ୍ମ । ୧୯୦୩ ମସିହା ସେପ୍ଟେମ୍ବର ୧୦ ତାରିଖ ଗୁରୁବାର ପିତାଙ୍କ ନାମ ପଣ୍ଡିତ ଦାଶରଥି ତ୍ରିପାଠୀ ଓ ମାତାଙ୍କ ନାମ ଚନ୍ଦ୍ରମଣୀ ଦେବୀ । ସେମାନଙ୍କ ପୂର୍ବପୁରୁଷ ପ୍ରଥମେ ମଧୁପୁର ଷ୍ଟେଟର ଭୁବନପୁର ଗ୍ରାମରେ ରହୁଥିଲେ ଓ ପରେ ମୁରାରୀପୁର ମୌଜାରେ ବସବାସ କରିଥିଲେ । ସେ ଜଣେ ସାମବେଦୀ କାଶ୍ୟପ ଗୋତ୍ରୀୟ ତ୍ରିପାଠୀ ବ୍ରାହ୍ମଣ ପରିବାରର ସନ୍ତାନ । ତାଙ୍କ ପୂର୍ବପୁରୁଷମାନେ ମଧୁପୁର ରାଜାଙ୍କ ଠାରୁ ପ୍ରହରାଜ ଉପାଧି ପାଇଥିଲେ । ତାଙ୍କ ଅତୀତର ଧନ ଜ୍ଞାନ ଭରା ପାରିବାରିକ ପରମ୍ପରାଟି କାଳ ସ୍ରୋତରେ ଭୁଷୁଡି ପଡିଥିଲା ଓ କବିଙ୍କ ଶୈଶବକାଳ ଆର୍ଥିକ ଅନାଟନ ମଧ୍ୟରେ କଟିଥିଲା । ତାଙ୍କ ବାଲ୍ୟଶିକ୍ଷା କ୍ଷେତ୍ରରେ ତାଙ୍କ ପିତାଙ୍କ ଅତୁଳନୀୟ ଅବଦାନ ଥିଲା । ପିଲାଦିନେ ସେ ତାଙ୍କ ମାମୁଁ ଘର ଗାଁ ମୂଳ ବସନ୍ତରେ ରହି କୋଠପଦା ମାଇନର ସ୍କୁଲରେ ଅଧ୍ୟୟନ କଲାବେଳେ ବହୁ ସାହିତ୍ୟ ପ୍ରେମୀ ଯୁବକ ଓ ବିଶିଷ୍ଟ ନାଟ୍ୟକାର ରାମଶଙ୍କର ରାୟ, ଗଣକବି ବୈଷ୍ଣବପାଣି କୋଠପଦାର ମହନ୍ତ ମହାରାଜାଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ ଓ ପିଲାଦିନରୁ ପାଠ୍ୟପୁସ୍ତକ ବ୍ୟତୀତ ଅନ୍ୟ ବହି ପଢିବା ନାଟ ଦେଖିବା ସହ ହାତଲେଖା ପତ୍ରିକା ପ୍ରକାଶନ କରିବା କାର୍ଯ୍ୟରେ ସଂପୃକ୍ତ ଥିଲେ । ମାଇନର ପାଠପଢା ପରେ ସେ କଟକ ଟ୍ରେନିଂ ସ୍କୁଲରେ ୩ ବର୍ଷ ଧରି ପାଠ ପଢିଲେ । ସେ ସମୟରେ ସେ ବହୁ ବଂଗଳା ପୁସ୍ତକ ପଢିବା ସହ ଭାରତ ତଥା ଓଡିଶାର କୃତବିଦ୍ୟ ପଣ୍ଡିତ ଓ ସ୍ୱାଧୀନତା ସଂଗ୍ରାମୀମାନଙ୍କ ସଂସ୍ପର୍ଶରେ ଆସିଥିଲେ । ଯୁବ ପ୍ରାଣରେ ଦେଶ ଓ ସାହିତ୍ୟ ପାଇଁ ଏକ ଉଚ୍ଚ ଦିଶା ତାଙ୍କର ସୃଷ୍ଟି ହୋଇଥିଲା । କଟକ ଟ୍ରେନିଂ ସ୍କୁଲରେ ୩ ବର୍ଷ ଶିକ୍ଷକତା ଯୋଗ୍ୟତା ଲାଭ କରି ୧୯୨୩ ଜୁଲାଇ ୧୧ ରୁ ୧୯୪୭ ମାର୍ଚ୍ଚ ୧୫ ତାରିଖ ଯାଏଁ ବଡଚଣା ମଧ୍ୟ ଇଂରାଜୀ ବିଦ୍ୟାଳୟରେ ସୁଦୀର୍ଘ ୨୪ ବର୍ଷ କାଳ ଶିକ୍ଷକତା କରିଥିଲେ ମାତ୍ର ୨୦ ଟଙ୍କା ମାସିକ ଦରମାରେ । ପରେ ମଧୁପୁର ଇଂରାଜୀ ବିଦ୍ୟାଳୟର ଶିକ୍ଷକ ଭାବେ ଅବସର ଗ୍ରହଣ କରିଥିଲେ ତାଙ୍କ କୃତୀତ୍ୱ ସମ୍ପନ୍ନ ଜୀବନ ପାଇଁ ୪୩ ବର୍ଷ ପରେ ୧୯୬୫ - ୬୬ ଶିକ୍ଷା ବର୍ଷ ପାଇଁ ତାଙ୍କୁ ରାଜ୍ୟପାଳ ପୁରସ୍କାର ମିଳିଥିଲା। ଶିକ୍ଷକ ସଂଗଠନ ଛାତ୍ର ସଂଗଠନ ଆଦିଠାରୁ ସେ ବହୁ ସମ୍ମାନିତ ହୋଇଛନ୍ତି । ୧୯୩୧ ମସିହାରେ ସେ ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତଙ୍କ ପରିଚାଳିତ ଭାରତୀ ତପୋବନ

ସଂଘରେ ଯୋଗଦେଲେ । ଦିଲ୍ଲୀ ମାଟିରେ ଉତ୍କଳୀୟ ସାସ୍କୃତିକୁ । ସାହିତ୍ୟକୁ ଉତ୍ସାହିତ କରିବା ଏ ସଂଗଠନର କାର୍ଯ୍ୟଥିଲା । ୧୯୪୩ ରେ ଗ୍ରାମାଞ୍ଚଳର ସାହିତ୍ୟିକ ମାନଙ୍କୁ ସଂଗଠନ କରିବା ଲକ୍ଷ୍ୟରେ ବାଳକୃଷ୍ଣକର ଏକ ସଂଗଠନ ଗଢିଥିଲେ । ତାର ନାମ ଥିଲା ଓଡିଆ ସାହିତ୍ୟ ପରିଷଦ । ସେଥିରେ ପଣ୍ଡିତ ତ୍ରିପାଠୀ ସକ୍ରିୟ ସଭ୍ୟ ଭାବେ ଯୋଗ ଦେଇଥିଲେ । କଟକ ଟ୍ରେନିଂ ସ୍କୁଲରୁ ସେ ସକ୍ରିୟ ଭାବେ ଲେଖାଲେଖି ଆରମ୍ଭ କଲେ । ଜାତୀୟ ସ୍ୱାଧୀନତା ସଂଗ୍ରାମର ଉନ୍ମାଦନା କବିଙ୍କ ଯୁବପ୍ରାଣରୁ କେତେକ କବିତା ବାହାର କରି ଦେଇଥିଲା । କବିଙ୍କ ପ୍ରଥମ ପ୍ରକାଶିତ କବିତା । ତତ୍‌କାଳୀନ ଓଡିଶାର ପ୍ରଧାନ ସାହିତ୍ୟିକ ପତ୍ରିକା ସହକାରରେ ସେ କବିତାର ନାମଥିଲା ନିର୍ଦ୍ଧନ ହେଲେ ହେଁ ମୁହିଁ ଧନୀକ ସନ୍ତାନ । ଏହାପରେ ବ୍ରହ୍ମପୁରରୁ ପ୍ରକାଶିତ ନବୀନ ପତ୍ରିକା ଓ ଓଡିଶାର ସର୍ବପ୍ରଥମ ଶିଶୁପତ୍ରିକା ପଞ୍ଚମୃତ ର ଧାରାବାହିକ କବିଭାବେ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ପ୍ରସିଦ୍ଧ ହୋଇଗଲେ ବାଳକୃଷ୍ଣ ମହାନ୍ତିଙ୍କ ଜହ୍ନମାମୁଁ । ବ୍ରଜସୁନ୍ଦର ଦାସଙ୍କ ମୁକୁରା ଶୁଭସ୍ତମ୍ଭ, ମନପବନ, କଲ୍ୟାଣୀ ଚତୁରଂଗ, ନବଭାରତ ଆଦି ବହୁ ପତ୍ରିକାରେ ଉପେନ୍ଦ୍ରଙ୍କର ଶତାଧିକ କବିତା ପ୍ରକାଶ ପାଇ ତାଙ୍କୁ ଖୁବ୍ ଜନପ୍ରିୟତା । ଆଣିଦେଇଥିଲା। ମଧ୍ୟ ଇଂରାଜୀ ବିଦ୍ୟାଳୟର ଶିକ୍ଷକଙ୍କ ଆର୍ଥିକ ସଂକଟ ତାଙ୍କ ଜୀବନରୁ ସ୍ପଷ୍ଟ ଜଣାପଡେ । ଖୁବ୍ କମ୍ ଟଙ୍କାର ଦରମାରେ ସେ ପରିବାର ପୋଷିବା । ପାଇଁ ଶିକ୍ଷକତା ସହ କିରୋସିନ ବେପାର, ରୂପା ବେପାର ଓ ବହି ଦୋକାନ ଖୋଲିଥିଲେ । ସାହିତ୍ୟରେ ସିନା ପ୍ରଖ୍ୟାତ ହୋଇଗଲେ କିନ୍ତୁ ବ୍ୟବସାୟରେ ସେ ସର୍ବଦା ମାଡିରେ ପଡିଥିଲେ । ସମାଜର ସବୁ ଲକ୍ଷଣକୁ ଗଭୀରଭାବେ ପର୍ଯ୍ୟବେକ୍ଷଣ କରିବା ଶକ୍ତି ତାଙ୍କର ଥିଲା । ତେଣୁ ତାଙ୍କର ପ୍ରତ୍ୟେକ କବିତାରେ ସୂକ୍ଷ୍ମ ବିଚାର ବୋଧ ସହ ଉଚ୍ଚମାନର କଳ୍ପନା ଶକ୍ତି ପରିଲକ୍ଷିତ ହୁଏ । ନିଜର ଅପ୍ରକାଶିତ ପାଣ୍ଡୁଲିପି ଗୁଡିକର ପ୍ରକାଶନ ପାଇଁ କବି ବିଭିନ୍ନ ବଂଧୁଙ୍କ ପରାମର୍ଶରେ ସେ ସମ୍ବାଦ ପତ୍ରରେ ସାହାଯ୍ୟ ଭିକ୍ଷା କରିବା ସହିତ ବିଭିନ୍ନ ଗଡଜାତର ବଦାନ୍ୟ ରାଜାମହାରାଜାଙ୍କୁ ମଧ୍ୟ ଭେଟିଥିଲେ ଓ ଆଶାନୁରୂପ ସାହାଯ୍ୟ ପାଇପାରିନଥିଲେ । ତାଙ୍କ ଗଡଜାତ ଭ୍ରମଣର ଅନୁଭବ ଆମେ ତାଙ୍କ କବିତାରେ ଦେଖିବାକୁ ପାଇବା । ୧୯୫୬ ରେ ଦିଲ୍ଲୀଠାରେ ଅନୁଷ୍ଠିତ Asian writer's conference ସେ ଯୋଗ ଦେବାକୁ ଯାଇଁ ବିଭିନ୍ନ ସ୍ଥାନ ଭ୍ରମଣ କରିବାର ସୁଯୋଗ ଲାଭ କଲେ । ସେ ବଂଗରେ ପ୍ରତିଷ୍ଠିତ All India Juvenile Literacy coference ନାମକ ଏକ ଶିଶୁ ସାହିତ୍ୟ ଅନୁଷ୍ଠାନରେ ସଦସ୍ୟ, ଆକାଶବାଣୀ କଟକ କେନ୍ଦ୍ରର ଜନପଦ କବି ସମ୍ମିଳନୀରେ ସେ ନିୟମିତ ଯୋଗ ଦେଇଥିଲେ । "ମୋ ଦେଶ ପ୍ରେସ ବୀର କିଶୋର ଦାସ ସ୍ଥାପନ କଲା ପରେ କବି ଉପେନ୍ଦ୍ର ତ୍ରିପାଠୀଙ୍କ କଣି

କାକୁତି ଓ ଘଣ୍ଟିଘାଗୁଡି ବହି ୨ ଖଣ୍ଡ ପ୍ରକାଶ ପାଇଥିଲା । ତାଙ୍କର ଘଣ୍ଟିଘାଗୁଡି । ବହିଟି କେନ୍ଦ୍ର ସରକାରଙ୍କ ଶିଶୁ ବିଭାଗ ପକ୍ଷରୁ ଓଡିଆ ବହିଭାବେ ପୁରସ୍କୃତ ହୋଇଥିଲା । ୧୯୬୩ - ୬୪ ରେ ପିଲାଙ୍କ ପଶୁପକ୍ଷୀ ପୁରାଣ ପୁସ୍ତକ, ଚିତ୍ରା (କାବ୍ୟନାଟିକା) ନିଶାରାକ୍ଷସୀ (କବିତା) ବେଙ୍ଗ ବାହାଦୂର ବହି ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଥିଲା । ବିଷୁବ ମିଳନରେ ମଧ ତାଙ୍କୁ ଶିଶୁ ସାହିତ୍ୟିକ ଭାବେ ପୁରସ୍କାର ଦିଆଯାଇଛି ।

କବି ଉପେନ୍ଦ୍ର ତ୍ରିପାଠୀ ଅଦମ୍ୟ ଉତ୍ସାହ ଓ ନିଜ ଉଦ୍ୟମ ବଳରେ ସେ ପାଠକଙ୍କ ନିକଟରେ ପହଞ୍ଚି ପାରିଛନ୍ତି । ତାଙ୍କର ଆର୍ଥିକ ଅସ୍ୱଚ୍ଛଳତା ସହ ସାମାଜିକ ପ୍ରତିଷ୍ଠାର ଅଭାବ ଓ ପ୍ରେରଣା ଉତ୍ସାହର ଅଭାବ ତାଙ୍କୁ ଓଡିଆ ସାହିତ୍ୟରେ ଯେତେ ଲୋକପ୍ରିୟ କରିବା କଥା ତାହା କରିପାରିନି । ଯୁଗେ ଯୁଗେ ଦରିଦ୍ର କଳାକାରଙ୍କୁ ଏପରି ଅବସ୍ଥା ଦେଇ ଗତି କରିବାକୁ ପଡେ । କିନ୍ତୁ ସାହିତ୍ୟ ଚିର ଶାଶ୍ୱତ, ଦିନେ ମଧ ତାହା ଜନମାନସରେ ଆଲୋଡନ ସୃଷ୍ଟି କରି କବିଙ୍କୁ ଗଣସମ୍ମାନ ଦେବ । ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କ ବିରାଟ ଗ୍ରନ୍ଥାବଳୀରେ ୧୯ଟି ଶିଶୁ ପୁସ୍ତକର ପ୍ରାୟ ୭୫୦ କବିତା ପ୍ରକାଶିତ ତାଙ୍କ ପ୍ରକାଶିତ ଶିଶୁ କବିତା ପୁସ୍ତକର ନାମ ମଧ ଖୁବ ମନଛୁଆଁ । କୁହୁକୁହୁ , ରୁଣୁଝୁଣୁ, ଗୁଣୁଗୁଣୁ, କୁଳୁକୁଳୁ, ସୁଲୁସୁଲୁ, କଷିକାକୁଡି, ଘଣ୍ଟି ଘାଗୁଡି, ହଂସ ଚାଙ୍ଗୁଡି, ଶିଶୁସଂଖାଳୀ, କଳା ବଉଦ, ଭାଇ ଭଉଣୀ ବେଙ୍ଗ ବାହାଦୂର, ମୂଷିମାଇସୀ, କହି ଜାଣିଲେ କଥା ସୁନ୍ଦର, ବଳଦ ଖୋଜିଲା ଠେଙ୍ଗ, ଅକଳ ମକଳ ଟକଳ ଟିଆଁ ତାଳରେ ମାଙ୍କଡ ମାରଇ ଡିଆଁ, ପିଲାଙ୍କ ପଶୁପକ୍ଷୀ ପୁରାଣ, ଉଦୟଭାନୁ, ଶିଶୁତୋଷ ରାମାୟଣ, ଏହିପରି ୧୯ଟି ସାରସ୍ୱତ କୃତି କବିତା ସଂକଳନ । ସେହିପରି ଲୋକସାହିତ୍ୟକୁ ଲେଖନୀର ବଳବତୀ ଶକ୍ତିରେ ପଣ୍ଡିତ ତ୍ରିପାଠୀ ପ୍ରକାଶ କରିବାକୁ ସମର୍ଥ ହୋଇଛନ୍ତି, ପ୍ରେମାମୃତ, ପ୍ରେୟସୀ, ଶ୍ରେୟସୀ, ଅମୃତ, ଅଗ୍ରଦୂତ, ଶତଶଂଖ, ରତ୍ନରେଣୁ, କବିତା ପୁସ୍ତକ ମାଧମରେ ତାହା ବ୍ୟତୀତ ଭ୍ରମଣ ଅନୁଭୂତି ବ୍ୟଞ୍ଜିତ ଯାତ୍ରିକ କବିତା ଗୁଚ୍ଛ ଓ ଦେଶପ୍ରେମ ମୂଳକ ଡିଣ୍ଡିମ ଖୁବ୍ ଲୋକପ୍ରିୟ ରଚନା, ସାମାଜିକ ଅପବ୍ୟୟ ସମ୍ପର୍କୀୟ ଚିତ୍ରା ମଧ ତାଙ୍କର ଏକ ମନମୁଗ୍ଧକର ସୃଷ୍ଟି । ୧୯୫୭ ମସିହାରେ ଚିତ୍ରା କାବ୍ୟ ନାଟିକାଟି ଓଡିଶା ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଥିଲା ।

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କ ସାହିତ୍ୟ କୃତି ଗୁଡିକର ସମୀକ୍ଷା ନ କଲେ ତାହା ଏକ ନିରସ କୃତି ଭାବେ ପଡି ରହିବ । ତେଣୁ ବର୍ତ୍ତମାନ ସମାଜ ପରିପ୍ରେକ୍ଷୀରେ ଏହାର ସାରସ୍ୱତ ସମୀକ୍ଷା ହେବା ଜରୁରୀ । ସାଧାରଣତଃ ଶିଶୁ ସାହିତ୍ୟର ମୁଖ୍ୟ ବିଭାଗ ଗୁଡିକ ହେଲା (କ) କବିତା (ଖ) ଶିଶୁନାଟକ (ଗ) ଐତିହାସିକ ଓ ଜୀବନ ଚରିତ ମୂଳକ

କାହାଣୀ (ଘ) ପୌରାଣିକ ଓ କିମ୍ବଦନ୍ତୀ ମୂଳକ (ଙ) ନୀତିକଥା (ଚ) ପଶୁପକ୍ଷୀ କାହାଣୀ ଛ) କୌତୁକ କାହାଣୀ ଜ) ଗଳ୍ପ ଝ) ପ୍ରକୃତି ବର୍ଣ୍ଣନା । ପଣ୍ଡିତ ଉପେନ୍ଦ୍ରଙ୍କ ପ୍ରାୟ ପ୍ରକାଶିତ ୭୫୦ ରୁ ଉର୍ଦ୍ଧ୍ୱ କବିତା ଓ ଗଦ୍ୟ ଲେଖାଗୁଡିକୁ ଅନୁଧ୍ୟାନ କଲେ ଲେଖକ ଶିଶୁ ସାହିତ୍ୟର ସବୁ ବିଭାଗରେ ଅପୂର୍ବ ନୈପୁଣ୍ୟ ପ୍ରଦର୍ଶନ କରିପାରିଛନ୍ତି । ସେଥିରୁ କେତେକ୍ ନିମ୍ନରେ ଆଲୋଚନା କରାଯାଇପାରେ ।

କବିତା - ୭୩୨ଟି ପ୍ରକାଶିତ କବିତା ମଧ୍ୟରୁ ପ୍ରାୟ ସବୁଗୁଡିକ ଶିଶୁ ମନଲାଖି । ଅତୀତର ଲୋକଗୀତ ଗୁଡିକର ଅପ୍ରାସଂଗିକ ଓ କପୋଳ କଳ୍ପିତ କାହାଣୀକୁ ନିଜର ଆଦର୍ଶ ନକରି ପଣ୍ଡିତ ତ୍ରିପାଠୀ ଶିଶୁ ର ଆଦରର ଖାଦ୍ୟନିଶା, ପରିଚିତ ବସ୍ତୁ, ଆଦରର ବସ୍ତୁ ଓ ଶିଶୁଭାବନା ବିଜଡ଼ିତ ମଧୁର ଅନୁଭବକୁ କବିତାର ମୁଖ୍ୟ ଆଧାର କରି ଗଢିଛନ୍ତି । ସମାଜ ଓ ପାରିବାରିକ ସଂପର୍କରୁ ଶିଶୁଟି ଯାହା ଶିକ୍ଷା କରେ ତାହା ଆଧାରହିଁ କବିତାର ପ୍ରାଣ ଶିଶୁର ମନସ୍ତତ୍ତ୍ୱକୁ ସଠିକ୍ ଭାବେ ଅଧ୍ୟୟନ କରି ସେ ସହଜ ସରଳ ଭାଷା ପରିପାଟୀରେ ମେଳାଇ କବିତାରେ ରୂପ ଦେଇଛନ୍ତି । ତାଙ୍କର କବିତା ଗୁଡିକରେ ଅପୂର୍ବ ପ୍ରକୃତି ବର୍ଣ୍ଣନା । ବିଜ୍ଞାନ, ଧର୍ମ, ଦେଶପ୍ରେମ ଆଦି ସଫଳତାର ସହିତ ଉପସ୍ଥାପିତ । କୁହୁକୁହୁ, ରଣୁଝୁଣୁ ଆଦି କବିତା ପୁସ୍ତକର ଅସଂଖ୍ୟ ଉଦାହରଣ ଦିଆଯାଇପାରେ । ପଣ୍ଡିତ ଉପେନ୍ଦ୍ର ବାବୁଙ୍କ କବିତାର କିଛି ଉଦାହରଣ ନଦେଲେ ଏ କଥା ଅଧିକ ସ୍ପଷ୍ଟ ହେବନି ପ୍ରକୃତି - ଶରତ ସଂଧ୍ୟା କବିତାର ପଦଟିଏ ।

ହରଗଉରା ନୟନ ହରା
ଶୋଭା ବଣିକଙ୍କୁ ରତ୍ନପସରା
ଶରଦ ଶଶି ଆକାଶେ ହସି
ଧରଣୀରେ ଢାଳେ ପୀୟୁଷ ରାଶି

ପଶୁପକ୍ଷୀ - ବେଙ୍ଗ ମାଉସୀତୁଆଲୋ, ଆସାମୁଁ ଆଣିଛି ଚାଲୋ
ଦୁଧ ତ ଟିଣରେ ରହିଛି
ସରିଗଲେ ପୁଣି ଆମେରିକା ଦେବ
ହଲପ କରିସେ କହିଛି ।

ନୀତିକଥା - କରମ ଧରମ ବୋଲି ମନେ ମନେ ହେଜରେ
ଧରମକୁ ସାଜିଦିଅ
କରମର ସାଜରେ
କରମ ଧରମ ବୋଲି ମନେ ମନେ ହେଜରେ

କୌତୁକ-ସଂଳାପ ଛନ୍ଦରେ ମନୋହର କୌତୁକ ସଂଗୀତ ତାଙ୍କର ଏକ ଅନବଦ୍ୟ ସୃଷ୍ଟି
ଯାହା ପଚାରିବୁ କହିବୁ ସତ ?

କହିବି ନାହିଁ କିଆଁ
ବିଶିଆ ପୁଅକୁ ମାଇଲା କିଏ
-କାଣିଆ ପୁଅ ଟିଆଁ ।

ଐତିହାସିକ ଜୀବନୀ

ଶିବାଜୀ !
ସେଦିନ ନାହିଁ ଆଜି
ଶିବର ତେଜେ ଭାରତ ମୁଖ
ଯେ ଦିନ ଦେଲ ମାଜି
ବଣ ପାହାଡେ ଗଢିଲ ଗଡ
ଥରାଇ ଦେଲ ମୋଗଲ ହାଡ
ବୁହାଇ ଦେଲ ସମର ଝଡ ବହୁ ସଇନ ସାଜି

ବିଶେଷ କରି ପଣ୍ଡିତ ତ୍ରିପାଠୀ ଜାତୀୟ କଂଗ୍ରେସର ୧୮୮୫ ଠାରୁ ୧୯୩୧ ମସିହା ଯାଏଁ ଅନୁଷ୍ଠିତ ଅଧିବେସନ ଗୁଡିକର ବିବରଣୀ ସବୁ ଏକ ଏକ ସଂକ୍ଷିପ୍ତ ପଦରେ ଚମତ୍କାର ଭାବେ ଲେଖି ତାଙ୍କ ରାଜନୈତିକ ମନନ ଶୀଳତାର ପରିଚୟ ଦେଇଛନ୍ତି । ଉଦାହରଣ ସ୍ୱରୂପ ୧୯୨୯ ମସିହାରେ କଂଗ୍ରେସ ଅଧିବେସନର ବିବରଣୀକୁ ଗ୍ରହଣ କରାଯାଇପାରେ ।

(୧୯୨୯ - ଲାହୋର)
କାର୍ଯ୍ୟେ ପରିଣତ  ନୋହିବାର ପୂର୍ବ
କଲିକତା ନିର୍ଦ୍ଧାରଣ
ଆଇନ୍ ଅମାନ୍ୟ ଚଳାଇବା ପାଇଁ
ଲାହୋର ହେଲା ବିଧାନରେ
ଗାନ୍ଧି ହେବେ କର୍ଣ୍ଣଧାର

ବୋଲି ଶୁଣାଇ ଦେଲେ ଜହ୍ୱାର ହେ -(କଂଗ୍ରେସ କବିତା ଗନ୍ଥାବଳୀ) ସେହିପରି ସାମାଜିକ ଜୀବନ ଅଧ୍ୟୟନ, ସାମାଜିକ ମନସ୍ତତ୍ତ୍ୱର ଅଭ୍ରାନ୍ତ ରୂପ ତାଙ୍କ ବହୁ କବିତାରେ ଦେଖାଯାଏ । ତାଙ୍କ ପ୍ରସିଦ୍ଧ ମୁଁ ନି. ପ୍ର : ସ୍କୁଲ ମାଷ୍ଟର କବିତାରୁ ପଦେ ।

ବାର ଦୁଆର ତେର ପାଳି
କଂସେ ଭାତରେ ପୋଷେ ବାଳି
ଆଜି ତିଅଣ କାଲି ଖାଲି
ଖଟା କେବଳ ନିଏ ଠେଲି
ସବୁ ନାଟ ପେଟରେ
ମୁଁ ନି. ପ୍ରା. ସ୍କୁଲ ମାଷ୍ଟର

କିମ୍ବା

ତୁମେ ଯାଉଥିଲା ବୁଲି
ଆମେ ଯାଉଥିଲୁ ବୁଲି
ତୁମର କାହିଁକି ଟି ଏ ଝୁଣୁଝୁଣୁ
ଆମର ନଜଲେ ଚୁଲି

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କ କଲମ ଅଜସ୍ରସ୍ରାବି । କଲମ ଧରିଲେ କବିତା ବାହାରୁଥିଲା । ସେ ଆଶୁ କବି ସମାଜର, ଦେଶର, ଜାତିର, ଭାଷାର, ଶିଶୁ ଓ ବୟସ୍କଙ୍କ ମନର , ଠାକୁରଙ୍କର, ଗାଁ ଠୁ ସହର ବାସୀଙ୍କ ଯାଏଁ ସହସ୍ର କବିତା  ସେ ଲେଖିଛନ୍ତି । ପ୍ରତ୍ୟେକ ଅନ୍ୟଠାରୁ ଭିନ୍ନ ବୋଲି ବାରି ହୋଇଯାଏ । ସେ ଶିକ୍ଷକ ଥିଲେ । ଶିକ୍ଷକ ଜୀବନର ଗଭୀର ଅନୁଭବ, ପୂଜ୍ୟପୂଜା, ଦେଶର ରାଜନୀତିକ ଆଲୋଡନ ସ୍ୱାଧୀନତା ସଂଗ୍ରାମର ଇତିବୃତ୍ତିର ସବୁ ବିଭାଗକୁ ପଣ୍ଡିତ ଉପେନ୍ଦ୍ରଙ୍କ ଲେଖନୀ ସ୍ପର୍ଶ କରିଚାଲିଛି । ଓଡ଼ିଶାର ପ୍ରାଚୀନ କବି ସାରଳା ଦାସ ଜଗନ୍ନାଥ ଦାସଙ୍କ ଠାରୁ ଆରମ୍ଭ କରି ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ରାଧାନାଥ ରାୟ, ମଧୁରାଓ, ଫକୀର ମୋହନ, ମଧୁସୁଦନ ଦାସଙ୍କ ସହ ସମସାମୟିକ କବିଙ୍କ ପ୍ରଭାବ ଉପେନ୍ଦ୍ର ବାବୁଙ୍କ ରଚନାରେ ପରିଲକ୍ଷିତ ହୁଏ । ଏହିପରି ଅନେକ ଅନୁକରଣ, ଅନୁସରଣ ମଧ୍ୟରେ କବିଙ୍କ ଜନଚେତନା ଅଧ୍ୟୟନ, ମୌଳିକ ଭାବରାଜି ଆଦିର ପରିଚୟ ମଧ୍ୟ ସୁଲଭ । ବ୍ୟଙ୍ଗରଚନା  ପୌରାଣିକ କାହାଣୀ ଐତିହାସିକ କାହାଣୀ ମଧ୍ୟରେ ଆଧୁନିକତାର ପ୍ରଲେପ ଦେବାରେ ସେ ସିଦ୍ଧହସ୍ତ ଥିଲେ । ଗଦ୍ୟ ରଚନାରେ ଯଦିଓ ବିଶେଷ ପରାକାଷ୍ଠା ଦେଖାଇ ପାରିନାହାନ୍ତି, କିନ୍ତୁ ପଦ୍ୟ କ୍ଷେତ୍ରରେ ସେ ଅତୁଳନୀୟ । କବିତା ମଧ୍ୟରେ ନାଟକୀୟତା, ସରଳ ଶିଶୁବୋଧ ଶବ୍ଦ ଚୟନ, ଗାଥା ରଚନା, କାହାଣୀ ଧର୍ମୀ କବିତା ରଚନା କ୍ଷେତ୍ରରେ କବି ଚିରସ୍ମରଣୀୟ ହୋଇ ରହିବେ ।

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କ ବିଶାଳ ରଚନା ବଳୀକୁ ଦେଖିଲେ କୌଣସି ପାଠକ

ସ୍ତମ୍ଭିଭୂତ ନ ହୋଇ ରହିପାରିବନି । ଏକ ଅସରନ୍ତି ସାରସ୍ୱତ ପ୍ରେରଣା ସେ । ବୋଧେ ଜୀବନ କାଳ ମଧ୍ୟରେ ସବୁ ମୁହୂର୍ତ୍ତରେ ଏ ସାରସ୍ୱତ ନିର୍ଝର ପ୍ରବାହିତ ହେଉଥିଲ । କୋଠପଦା ମାଇନର ସ୍କୁଲ ରେ ଛାତ୍ର ଥିବାବେଳେ ଯେଉଁ ଆଗ୍ରହ ସୃଷ୍ଟି ତାହା କ୍ରମଶଃ ଏକ ମହାଦ୍ରୁମରେ ପରିଣତ ହୋଇଥିଲା ।

କେବଳ ଶିଶୁଙ୍କ ପାଇଁ ସେ ଲେଖିନାହାନ୍ତି ବରଂ ବହୁ ଲେଖା ବୟସ୍କପାଠକମାନଙ୍କ ପାଇଁ ମଧ୍ୟ ଉଦ୍ଦିଷ୍ଟ । ତାଙ୍କର ପ୍ରେୟସୀ, ଶ୍ରେୟସୀ, ଶତଶଂଖ, ଡିଣ୍ଡିମ, ଅଗ୍ରଦୂତ ଆଦି ବହୁ କବିତା ପୁସ୍ତକ କେବଳ ଶିଶୁମାନଙ୍କର ନୁହେଁ ବରଂ ବୟସ୍କପାଠକମାନଙ୍କ ପାଇଁ ଅଭିପ୍ରେତ । କବି ଦେଶର ରାଜନୈତିକ ସାମାଜିକ ଓ ଅର୍ଥନୀତିକ ଘଟଣାବଳୀ ସହି ଏପରି ତୀକ୍ଷଣ ନଜର ରଖୁଥିଲେ ଯେ ସେହିଘଟଣା ଘଟିବା ମୁହୂର୍ତ୍ତରେ ତାଙ୍କ ଲେଖନୀରୁ କବିତାଟିଏ ବାହରି ପଡୁଥିଲା । ଉଦାହରଣ ସ୍ୱରୂପ ଅପ୍ରେଲ ପହିଲା ୧୯୩୬ ଯେଉଁ ଦିନ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠିତ ହୋଇଥିଲା, ସେହିଦିନ ତାର ସାରସ୍ୱତ ପ୍ରତିକ୍ରିୟା କବି ଲେଖନୀରୁ ବହାରିଥିଲା । କବିତା ଉନେଇଶ ଛତିଶର ଅପ୍ରେଲ ପହିଲା । କବିତା ଗୋଟିଏ ପଦ ଉଦାହରଣ ନ ଦେଲେ କବିମାନସ ସହ ପରିଚିତ ହୋଇପାରିବନି ।

ଉଣେଇଶ ଛତିଶର ଅପ୍ରେଲ ପହିଲା
ଥିଲା ଥିଲା ବେଙ୍ଗ ରଜା ବେଙ୍ଗୁଲୀକୁ କହିଲା
ଖୁସୀ ହେଲେ କିସ ହେବ ଗୋଡ ମୁଣ୍ଡ ରହିଲା
ଖଣ୍ଡିଆର ଦଶା ଏକା ଭୋଗିବାକୁ ହୋଇଲା

ପଣ୍ଡିତ ତ୍ରିପାଠୀଙ୍କ ଜୀବନୀ ଓ କୃତିକୁ ଆଲୋଚନା କଲେ ତାଙ୍କର ଗଭୀର ଶବ୍ଦ ଜ୍ଞାନ, ସୁପ୍ରଚଳିତ ଲୋକକାହାଣୀ, ଲୋକଗୀତ ଆଦି ସହିତ ଓ କ୍ଲିଷ୍ଟ ସାହିତ୍ୟ ରେ ମଧ ଗଭୀର ପାଣ୍ଡିତ୍ୟ ଥିଲା । କାହାଣୀଟିକୁ ଶିଶୁ ପାଠକ ବୁଝିପାରିବେ । ଶବ୍ଦକୁ ବୁଝିବେ, ଅର୍ଥକୁ ବୁଝିବେ ଶବ୍ଦ ସଂଯୋଜନାରେ ଧ୍ୱନିମାଧୁର୍ଯ୍ୟ ସୁରକ୍ଷିତ ହୋଇ ରହିବ, ଦରୋଟି ଭାଷାରେ ଉଚ୍ଚାରଣ ହୋଇପାରୁଥିବ, ନିଜ ପରିବେଶ ସହିତ ମେଳ ଖାଉଥିବ ଆଦି, ବିବିଧ ସତର୍କତା ଲକ୍ଷ୍ୟ କରାଯାଏ , ପୁଣି ଏଥି ସହିତ ନୈତିକ ମୂଲ୍ୟବୋଧ ମଧ୍ୟ ବିକଶିତ ହେବା ଆବଶ୍ୟକ । ଅପରିପକ୍ୱ ଶିଶୁ ମନସ୍ତତ୍ୱକୁ ସର୍ବାଗ୍ରେ ବିଚାରକୁ ନିଆଯିବ । ଦରକାର ପଣ୍ଡିତ ତ୍ରିପାଠୀ ଏ ସମ୍ବନ୍ଧରେ ଯଥେଷ୍ଟ ସତର୍କତା ବହୁ କବିତାର ଅବଲମ୍ବନ କରି ଯଶସ୍ୱୀ ହୋଇଛନ୍ତି । କେତେକ କବିତାରେ ହାସ୍ୟରସ, ଧ୍ୱନିମାଧୁର୍ଯ୍ୟ ଆଣିବା ପାଇଁ ଅଧିକ ଉତ୍ସାହିତ ହୋଇ ଅବଶ୍ୟ ସଂଯୋଜନା ଠିକ୍ କରିପାରିନାହାନ୍ତି । କିନ୍ତୁ ଶିଶୁ ମନଲାଖି ରଚନାର ଗୌରବ ଅର୍ଜନ କରିପାରିଛନ୍ତି । ଦରିଦ୍ର ଶିକ୍ଷକ, ସ୍ୱଳ୍ପ ଶିକ୍ଷିତ ଅଥଚ ଗଭୀର

ଜ୍ଞାନର ଅଧିକାରୀ ସେ ନିଜ ରଚନାକୁ ଲୋକ ଲୋଚନ ଆଣିବାକୁ ଅମାପ ଉଦ୍ୟମ କରିଛନ୍ତି । ଗଡଜାତ ବୁଲି ଅର୍ଥ ସଂଗ୍ରହ କରିବା, ଉଚ୍ଚ ପଦସ୍ଥ ବ୍ୟକ୍ତି ବିଶେଷଙ୍କୁ ତାଙ୍କ ସାହିତ୍ୟ ମାଧ୍ୟମରେ ପ୍ରଭାବିତ କରି ପୁସ୍ତକ ପ୍ରକାଶନ କରିବ, ଏଥିପାଇଁ ବିଭିନ୍ନ ବ୍ୟବସାୟକୁ ଆପଣେଇ ନେବା ତାଙ୍କ ଆତ୍ମ ଜୀବନୀରୁ ମିଳେ । ତାଙ୍କ ଗ୍ରନ୍ଥାବଳୀରେ ସନ୍ନିବେସିତ "ଗୋଟାଏ କଲମ ଟୋପାଏ କାଳି" ମଧ ବହୁତଥ୍ୟ ପ୍ରଦାନ କରେ । ତତ୍‌କାଳୀନ ଶିକ୍ଷକମାନଙ୍କର ଅବସ୍ଥା, ବେତନ ପ୍ରଥା, ଓଡିଆ ସାହିତ୍ୟର ଅଗ୍ରଗତି, ପତ୍ରପତ୍ରିକା, ସଂଗଠନ ଆଦି ବହୁ ତଥ୍ୟ ପୂର୍ଣ୍ଣ ଉପାଦାନ ମିଳେ । ଉପେନ୍ଦ୍ର ତ୍ରିପାଠୀ ଯେତେ ସମ୍ମାନ ପାଇବା କଥା ଏ ଯାଏଁ ତାଙ୍କ ରଚନାବଳୀ କୁ ତାହା ମିଳିନାହିଁ । ଏ ଦିଗରେ ଉଦ୍ୟମ ହେବା ଜରୁରୀ ।

ସହାୟକ ଗ୍ରନ୍ଥ : ୧. ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଗ୍ରନ୍ଥାବଳୀ :
୨. ଆଧୁନିକ ଓଡିଆ ସାହିତ୍ୟ - ଡଃ ଜାନକୀ ବଲ୍ଲଭ ମହାନ୍ତି
୩. ଓଡିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ - ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ



# ନବନାଟ୍ୟ ଆନ୍ଦୋଳନ ସାରଥି : ବିଶ୍ୱଜିତ୍ ଦାସ

ବିଂଶ ଶତାବ୍ଦୀର ମଧ୍ୟଭାଗରେ ଓଡିଆ ନାଟକର ଦିଶା ଏକ ଭିନ୍ନ ମୋଡ ନେବାକୁ ବାଧ୍ୟହେଲା । ବିଶ୍ୱ ନବନାଟ୍ୟ ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହୋଇ ନାଟକର ସଂଜ୍ଞା ଓ ସ୍ୱରୂପ ବଦଳିଗଲା । ଅତୀତ ର ବିବିଧ ନାଟ୍ୟ ସଂଜ୍ଞା ଯଥା, ଭରତମୁନିଙ୍କ ଲୋକ ବୃତ୍ତାନୁ କରଣମ୍ ଆରିଷ୍ଟଟଲଙ୍କ ର Imitation of Action ଓ ନିକଲ ଙ୍କର Art of Expressin of idea about life" ର ମୂଲ୍ୟବୋଧ ଏହି ସମୟରେ ଯେପରି ଭୂଷୁଡି ପଡିଲା । ବିଶ୍ୱର ଏ ପରିବର୍ତ୍ତନ ର ଶୁଭସଂକେତ, ଉଦ୍ଭଟ ନାଟ୍ୟ ଆନ୍ଦୋଳନ ରୂପେ ସାହିତ୍ୟ ଜଗତରେ ଦେଖାଦେଲା । ଏ ସାରସ୍ୱତ କ୍ରାନ୍ତି ସହ ତାଳ ମିଳାଇ ଓଡିଆ ନାଟକ ରେ ମଧ୍ୟ ବହୁବାଦ (ism) ର ପରୀକ୍ଷା ନିରୀକ୍ଷା କରାଗଲା । ସେତେବେଳେ ଓଡିଶାରେ ଚାରି ଚାରୋଟି ପେଷାଦାର ମଂଚ ଖୁବ୍ ଲୋକପ୍ରିୟ ଥିଲା । ଏହି ବ୍ୟବସାୟିକ ମଂଚ ଆର୍ଥିକ କାରଣରୁ ହେଉ ବା ରକ୍ଷଣଶୀଳତା କାରଣରୁ ହେଉ ନବନାଟ୍ୟ ଆନ୍ଦୋଳନ ର ପରୀକ୍ଷାଗାର ହେବାପାଇଁ ଇଛା ପ୍ରକାଶ କରୁନଥିଲେ । ଆଧୁନିକ ନାଟକ ଗୁଡିକ ଅବୋଧ ଓ ଜନତା କୁ ଆକର୍ଷଣ କରିପାରୁନଥିଲା । ଏହାର ମାତ୍ରାଧିକ ବୌଦ୍ଧିକ ସଂକେତ ନାଟକ ର ଜନରଂଜନ କଳା କୁ ନଷ୍ଟ କରି ଦେଉଥିଲା । ପେଷାଦାରୀ ମଂଚର ଐତିହାସିକ, ପୌରାଣିକ, ଏବଂ ସଂସ୍କାରଧର୍ମୀ ନାଟକ ଗୁଡିକ ଗତାନୁଗତିକ ପରଂପରା କୁ ଏଡାଇ ଦେଇ ପାରୁନଥିଲେ । ନବନାଟ୍ୟ ଆନ୍ଦୋଳନର ପ୍ରବକ୍ତା । ମାନେ ପରୀକ୍ଷା ନିରୀକ୍ଷା କରିବାକୁ ନାଟ୍ୟମଂଚ ଟିଏ ପାଉନଥିଲେ । ସେମାନେ ବିଶ୍ୱନାଟ୍ୟ ଆନ୍ଦୋଳନ ରେ ସାମିଲ ହେବାପାଇଁ ଅଗତ୍ୟା ସୌଖିନ ରଂଗମଂଚର ସହାୟତା ନେବାକୁ ଆରମ୍ଭ କଲେ । ଯେଉଁ ନାଟ୍ୟକାର ମାନେ ସୌଖିନ ମଂଚ ରୁ ନବନାଟ୍ୟ ଆନ୍ଦୋଳନ ର ପରୀକ୍ଷା କରି ସଫଳ ହେଲେ ସେମାନଙ୍କ ମଧ୍ୟରୁ ଓଡିଶାରେ ୨ ଜଣଙ୍କ ଭୂମିକା ସ୍ୱୀକୃତ । ସେମାନେ ହେଲେ ମନୋରଂଜନ ଦାସ ଓ ବିଶ୍ୱଜିତ୍ ଦାସ । ପ୍ରଥମ ଜଣକ ସୃଜନୀ ସୌଖିନ ସଂସ୍ଥା ମାଧ୍ୟମରେ ନିଜନାଟକ ଗୁଡିକୁ ପରଖୁ ଥିବାବେଳେ, ଦ୍ୱିତୀୟ ଜଣକ ସଂକେତ ସୌଖିନ ନାଟ୍ୟସଂସ୍ଥା ମାଧ୍ୟମରେ ଓଡିଆ ସାହିତ୍ୟ ପାଇଁ କିଛି ଆଧୁନିକ ଉଦ୍ଭଟ ଶୈଳୀର ସଫଳ ନାଟକ ଲେଖି ଯଶସ୍ୱୀ ହୋଇଗଲେ ।

ଏହି ପ୍ରାଥମିକ ସ୍ତରରେ ନବନାଟ୍ୟ ଆନ୍ଦୋଳନକୁ ଗତିଶୀଳ କରାଇବାରେ କୃତି ପାଇଁ ବିଶ୍ୱଜିତ ଦାସଙ୍କୁ ୨୦୦୦ ମସିହାରେ ଆଦିନାଟ୍ୟକାର ସମ୍ମାନ ମିଳିଥିଲା । ପୂର୍ବରୁ

୧୯୭୪ ମସିହାରେ ସଂଗୀତ ନାଟକ ଏକାଡେମୀ, ୧୯୮୨ ରେ ଓଡିଶା ନାଟ୍ୟ ଏକାଡେମୀ ପୁରସ୍କାର ସେ ଲାଭ କରିଥିଲେ । ଏ ସବୁ ପୁରସ୍କାର ଉର୍ଦ୍ଧ୍ୱରେ ସେ ଓଡ଼ିଆ ନାଟ୍ୟପ୍ରେମୀ ଜନତାଙ୍କ ହୃଦୟର ଜୟମାଲ୍ୟ ବହୁ ପାଇସାରିଥିଲେ । ୧୯୩୬ ମସିହା ଅଗଷ୍ଟ ଆଠ ତାରିଖରେ ଯାଜପୁର ଜିଲ୍ଲାର ଦଶରଥପୁର ବ୍ଲକର ବାଉଁଶବାଡି ଗ୍ରାମରେ ତାଙ୍କର ଜନ୍ମ। ପିତାଙ୍କ ନାମ ସୁବୋଧ ଦାସ ଓ ମାତାଙ୍କ ନାମ କୃଷ୍ଣକାମିନୀ ଦେବୀ । ତାଙ୍କ ପିତା ଜଣେ ଦକ୍ଷ ଅଭିନେତା, ନିର୍ଦ୍ଦେଶକ ଓ ସ୍ୱାଧୀନତା ସଂଗ୍ରାମୀ ପଣ୍ଡିତ ବ୍ୟକ୍ତି ଥିଲେ । ତାଙ୍କ ମା ମଧ୍ୟ ଜଣେ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଥିଲେ । ୧୯୩୨ ରେ ସେ ଯାଜପୁର ରେ ଜାତୀୟ ପତାକା ଉତ୍ତୋଳନ କରି ଜେଲ ଯାଇଥିଲେ । ଜୀବନକୁ ନିରିଖେଇ ଦେଖି, ତାର ଗୁରୁଗମ୍ଭୀର ରୂପକୁ ବ୍ୟଙ୍ଗ ଓ ବିଦ୍ରୁପ ରଂଗରେ ରଂଗାଇ, ରୁଗ୍‌ଣ ସମାଜର ଦୋଷ ଦୁର୍ବଳତା କୁ ଦୂର କରିବା ପାଇଁ ଓ ସର୍ବୋପରି ମଣିଷର ଅବଚେତନ ମନର କ୍ରିୟା - ଅନୁକ୍ରିୟା କୁ ସଂଳାପର ଯାଦୁରେ ପରଶି ଦେଇ ସେ ସାର୍ଥକ ନାଟ୍ୟକାରର ଗୌରବ ପାଇଥିଲେ ।  ସ୍ୱାଧୀନତା ସଂଗ୍ରାମୀ ପିତା ମାତାଙ୍କ ଠାରୁ ସେ ସ୍ୱାଧୀନ ଚେତା ଗୁଣ ଟି ହାସଲ କରିଥିଲେ ।  ବିଶ୍ୱଜିତ୍ ଦାସ୍ ଙ୍କ ଶୈଶବ ଓ କୈଶୋର ସମୟ ଯାଜପୁର ଏହି ବିଖ୍ୟାତ ଗାଁରେ କଟିଥିଲା । ମାଇନର ଯାଏଁ ପାଠପଢା ଯାଜପୁର ମାଟିରେ । ଏ ଅଂଚଳର ସଭ୍ୟତା ସଂସ୍କୃତି ତାଙ୍କୁ ପ୍ରଭାବିତ ଖୁବ୍ କରିଥିଲା । "ରାତିପରେ ରାତି ଉଜାଗର ରହି ଗାଁ ସ୍କୁଲ ସାମ୍ନା ପଡିଆରେ ଦେଖିଥିବା ଯାତ୍ରା ଅଭିନୟର ଅନୁଭୂତି ମତେ ସେ ପର୍ଯ୍ୟନ୍ତ ଅଭିଭୂତ କରିରଖିଥିଲା । କେଉଁ ଗାଁର ଗାଈ ଜଗାଳି ପିଲା ଭଗିଆ ରାତିରେ ରାଜପୁତ୍ର ବେଶ ହୋଇ ହାତରେ ଖଣ୍ଡା ଧରି ପରମ ଉତ୍ସାହ ସହକାରେ ଯୁଦ୍ଧର ଅଭିନୟ କରୁଥିଲୁ"। ଏହିପରି ଅନେକ ସ୍ମୃତି ବାଲ୍ୟବେଳର ସେ ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ ସେତେବେଳେ ହୃଦୟ ତନ୍ତ୍ରୀକୁ ଝଂକୃତ କରୁଥିବା ନାଟକର ଅନ୍ତଃସ୍ୱର ନିସୃତ ଅନୁଭୂତି ହିଁ କେବଳ ଆମ ମନ ପ୍ରାଣକୁ ଅଚ୍ଛନ୍ନ କରି ରଖିଥିଲା । ଏବେ କିନ୍ତୁ ନାଟକ ଓ ଦର୍ଶକମାନଙ୍କର ରଚି ବିଭ୍ରାଟକୁ ନେଇ ସେ ଖୁବ୍ ଚିନ୍ତା ପ୍ରକଟ କରିଯାଇଛନ୍ତି । ନାଟ୍ଟକକ ଦର୍ଶନ କଲାବେଳେ ନାଟ୍ୟକାର, ନିର୍ଦ୍ଦେଶକ ପରି ଦର୍ଶକମାନଙ୍କ ଅବଦାନ କୁ ମହତ୍ତ୍ୱପୂର୍ଣ୍ଣ ବୋଲି କହିଛନ୍ତି ତାଙ୍କ ଭାଷାରେ । " ଏ ସତ୍ତ୍ୱେ ନାଟକ କ୍ରମେ କ୍ରମେ ମନୋରଂଜନର ବାସ୍ନା ଆଘ୍ରାଣ କରିବାକୁ ଚାହୁଁଥିବା ସାଧାରଣ ଦର୍ଶକମାନଙ୍କଠାରୁ ଦୂରେଇ ଯିବାର ଲାଗିଛି । ସେ ଦୃଷ୍ଟିରୁ ନାଟକର ବୌଦ୍ଧିକ ଗୁଣାଗୁଣ ମାପଚୁପ କଲାବେଳେ ଲୋକପ୍ରିୟ ନାଟକ ପ୍ରତି ଆଖି ବୁଜି ଦେଲେ ଚଳିବ ନାହିଁ । (୩) ନାଟକ ସମ୍ବନ୍ଧରେ ବିଶ୍ୱଜିତ୍ ଦାସଙ୍କ ଅଭିମତ ଚିରସ୍ମରଣୀୟ  । ଲୋକନାଟ୍ୟ ବା ଗଣନାଟ୍ୟର ମନୋରଂଜନ ଧର୍ମରୁ ସେ ପିଲାବେଳରୁ ଉତ୍ସାହିତ । ସବୁ

ପରୀକ୍ଷା ନିରୀକ୍ଷାର ମୂଳରେ ସେ ଦର୍ଶକର ଅବଦାନକୁ ସ୍ୱୀକାର କରିଯାଇଛନ୍ତି । ନାଟକକୁ ଏକ ବୌଦ୍ଧିକ ରୂପ ଦେଇ ପାଠ୍ୟ ନାଟକରେ ସୀମିତ କରିବାକୁ ସେ ଚାହିଁ ନାହାନ୍ତି । ୧୯୪୬ ମସିହାରେ ସେ କଟକର ପ୍ୟାରି ମୋହନ ଏକାଡେମୀରେ ନାମ ଲେଖାଇଥିଲେ ଓ ପରେ ରେଭେନସା କଲେଜରେ ଉଚ୍ଚଶିକ୍ଷା ଗ୍ରହଣ କରିଥିଲେ । ୧୯୫୨ ମସିହାରେ ଏକାଙ୍କିକାର ଆବଶ୍ୟକତା ଅନୁଭବ କରିବା ସହିତ ବଂଧୁ ଶୁଭେଚ୍ଛୁ ମାନଙ୍କ ଅନୁରୋଧରେ "ଗୋଟିଏ ଦୃଶ୍ୟ" । ଏକାଙ୍କିକା ରଚନା କରିଥିଲେ । ଏହା ଭାରତୀୟ ଗଣନାଟ୍ୟ ସଂଘ ପକ୍ଷରୁ ୧୯୫୨ ରେ ତତ୍‌କାଳୀନ ଜନତା ରଂଗମଂଚରେ ଅଭିନୀତ ହୋଇଥିଲା । ସେ ନାଟକରେ ଅନନ୍ତ ମହାପାତ୍ର. ଅକ୍ଷୟ ମହାନ୍ତି, ନିରଞ୍ଜନ ପଟ୍ଟନାୟକ ଓ ଝରଣା ଦାସଙ୍କ ପରି ପ୍ରମୁଖ କଳାକାର ମାନେ ମଧ ଅଭିନୟ କରିଥିଲେ । ଏହାର ସଫଳତା ଓ ଲୋକପ୍ରିୟତାରେ ଉଦ୍‌ବୁଦ୍ଧ ହୋଇ ସେ ସାରାଜୀବନ ନାଟକ ପରେ ନାଟକ ଲେଖିଚାଲିଲେ । ୧୯୫୭ ମସିହାରେ ସ୍ୱାଧୀନତା ସଂଗ୍ରାମର ଶତବାର୍ଷିକ ଉପଲକ୍ଷେ ସେ ଲେଖିଥିଲେ ନାଟକ ବହ୍ନି । ନିଖିଳ ଉତ୍କଳ ନାଟକୋତ୍ସବରେ ତାହା ସର୍ବୋତ୍କୃଷ୍ଟ ବିବେଚିତ ହୋଇଥିଲା ତାଙ୍କ ରଚିତ ଏକାଙ୍କିକା ଗୁଡ଼ିକ ସେ ସମୟରେ ରେଭେନ୍‌ସା କଲେଜ, ଶୈଳବାଳା ମହିଳା କଲେଜ, ଖ୍ରୀଷ୍ଟ ମହାବିଦ୍ୟାଳୟ । ଆଇନ କଲେଜ ଆଦିର ସଂସ୍କୃତିକ କାର୍ଯ୍ୟକ୍ରମରେ ଅଭିନୀତ ହୋଇ ବହୁ ପ୍ରଶଂସିତ ହୋଇଥିଲା । ତାଙ୍କ ରଚିତ ୬୦ଟିରୁ ଉର୍ଦ୍ଧ୍ୱ ଏକାଙ୍କିକା ଓଡିଶାର ବିଭିନ୍ନ ଶିକ୍ଷାନୁଷ୍ଠାନ ଓ ସୌଖିନ ମଂଚରେ ନବ ଜାଗରଣ ସୃଷ୍ଟି କରିଥିଲେ । ସେ ଏକାଙ୍କିକାମାନଙ୍କ ମଧରୁ ଗୋଟିଏ ଦୃଶ୍ୟ, ଡାଆଣୀ, ବଇଂଶୀ, ତନ୍ଦ୍ରା, ବ୍ୟର୍ଥଲଗ୍ନ, ସୋ ସ୍ୱର୍ଗମର୍ତ୍ତ୍ୟ, ଛାୟାବେଶୀ, ନିର୍ଦ୍ଧାରିତ ଶିଳ୍ପୀଙ୍କ ଅନୁପସ୍ଥିତରେ - ଆଦି ଏକାଙ୍କିକା ଗୁଡ଼ିକ ନବନାଟ୍ୟ ଆନ୍ଦୋଳନ ପାଇଁ ଓଡିଶାରେ ପଥ ପରିଷ୍କାର କରି ଚାଲିଥିଲା । ପ୍ରଥମ ଅବସ୍ଥାରେ ତାଙ୍କ ରଚନାରେ ଗତାନୁଗତିକତାର ସ୍ୱରଥିଲେ ସୁଦ୍ଧା ପରବର୍ତ୍ତୀ ଜୀବନରେ ସେ ଏକ ପ୍ରଗତିଶୀଳ ସ୍ରଷ୍ଟା ଭାବରେ ଦେଖାଦେଲେ । ନାଟକ ମାଧମରେ ଗଣଚେତନା ଜାଗରଣ କରିବା ସହଜ ଓ ସଫଳ ବୋଲି ବିଶ୍ୱଜିତ୍ ଦାସ ଅନୁଭବ କରୁଥିଲେ ।

ନିଜଭାଷାରେ ନିଜର ଆଭିମୁଖ୍ୟ ପ୍ରକାଶ କରି କହିଥିଲେ "ମଣିଷର ମନ ତଥା ତାର ପାରିପାର୍ଶ୍ୱିକ ଅବସ୍ଥା ଉପରେ କୌଣସି ନିର୍ଦ୍ଦିଷ୍ଟ ପ୍ରଭାବ ପକାଇବାପାଇଁ ନାଟକ (ଯାହା ଅଭିନୟାପଯୋଗୀ) ଭଳି ଘନିଷ୍ଟ ମାଧମ ଆଉ କିଛି ନାହିଁ । ସେଥିପାଇଁ ନାଟକର ଆକର୍ଷଣ ମୋ ପାଖରେ ଦୁର୍ନିର୍ବାର ।

ଗଭୀର ଦେଶଭକ୍ତି, ବିପ୍ଳବର ମାନସିକତା ସ୍ଥାପନ କରିବା ପାଇଁ ସେ ଚାଷ ନାଟକାର ଗୋଗଲଙ୍କ " The Government Inspector" ଛାୟାରେ ଲେଖିଥିଲେ

"ପ୍ରତାପ ଗଡରେ ଦିଦିନ" ନାଟକ । ଗୋଗଲଙ୍କ ନାଟକ ଦିନେ ଚାଷିଆରେ ବିପ୍ଳବ ସୃଷ୍ଟି କରିଥିଲା । ସେ ନାଟକ ଏତେ ଲୋକପ୍ରିୟ ଓ ଆଦୃତ ହୋଇଥିଲା ଯେ ଚାଷର ସରକାରୀ କର୍ମଚାରୀବର୍ଗ ନାଟ୍ୟକାରଙ୍କୁ ଭର୍ତ୍ସନା କରିବାକୁ ଯାଇଁ କହିଥିଲା He is an enemy of Russia and should be sent to saibenia in chains. ବିଶ୍ୱଜିତ୍ ବାବୁ ଏପରି ବିପ୍ଳବ ଧର୍ମୀ ବାର୍ତ୍ତାକୁ ପ୍ରତାପଗଡରେ ଦିଦିନ ନାଟକରେ ପ୍ରଦର୍ଶନ କରି ଗଡଜାତ କରଦ ରାଜ୍ୟର ସମସ୍ୟାକୁ ରୂପ ଦେବାକୁ ଚେଷ୍ଟା କରିଥିଲେ । ଏ ନାଟକଗୁଡିକ ତାଙ୍କ ସ୍ରଷ୍ଟାମାନସର ମୁଖ୍ୟଧାରାର ସଂକେତ ଦିଏ । ତତ୍କାଳୀନ ସମାଜର ଜଟିଳ ମାନସିକତା ଅକାରଣ ନୈରାଶ୍ୟବୋଧ, ନିଃସଂଗତା ଆଦିକୁ ସେ ତାଙ୍କ ପରିକଳ୍ପିତ କାହାଣୀ ମଧ୍ୟରେ ବ୍ୟଙ୍ଗ ଓ ବିଦ୍ରୁପଭରା ଭାଷା ମାଧ୍ୟମରେ ପ୍ରକାଶ କରିବାକୁ ସମର୍ଥ ହୋଇଥିଲେ । ପାଶ୍ଚାତ୍ୟ ଜଗତର Absurd Drama (ଉଦ୍ଭଟ ନାଟକ) ଓ ଓଡିଶାର ନବନାଟ୍ୟ ଆନ୍ଦୋଳନ ଏକା ପରି ନଥିଲା । ଉଦ୍ଭଟ ନାଟକ ସ୍ଥିତିବାଦୀ ସଂକଟକୁ ଗୁରୁତ୍ୱ ଦେଉଥିଲା ବେଳେ ନବନାଟ୍ୟ ଆନ୍ଦୋଳନ ଜୀବନର ବହୁମୁଖୀ ବାସ୍ତବତାର ଚିତ୍ର ଅଙ୍କନ କରିବାକୁ ସମର୍ଥ । ବିଶ୍ୱଜିତ୍ ଦାସ ନବନାଟ୍ୟ ଆନ୍ଦୋଳନ ଓ ଉଦ୍ଭଟ ନାଟକର ଏକ ମିଶା ମିଶି ସିମ୍ଫୋନି ।

ସେ ତାଙ୍କର ପାଶ୍ଚାତ୍ୟ ନାଟ୍ୟ ଦର୍ଶନକୁ ଓଡିଆ ମାଟିରେ ଆରୋପ କରି ନାଟ୍ୟଜଗତରେ ବହୁ ବୈଚିତ୍ର୍ୟ ସୃଷ୍ଟି କରିପାରୁଥିଲେ । ନିଶିପଦ୍ମ ନାଟକରେ ଯଦିଓ ସଭ୍ୟ ମଣିଷର ସ୍ୱାର୍ଥପର ରୂପ ମିଥ୍ୟା ଓ ଅହମିକାର ମଦଗର୍ବ ବିଶ୍ଳେଷିତ କିନ୍ତୁ ଏହାର ବିଷୟ ବସ୍ତୁରେ ଗତାନୁଗତିକତାର ଆନୁଗତ୍ୟ ସ୍ପଷ୍ଟ । "ଶୁଣ ସୁଜନେ" । ନାଟକଟି ଇଂରାଜୀ ଏକାଙ୍କିକା some thing to the talked about ର ଛାୟାରେ ଲିଖିତ । ସରଳ ବିଷୟ ବସ୍ତୁ ଅପୁରନ୍ତ ହାସ୍ୟରସ ମଧ୍ୟରେ ନାଟକଟି ଗତିଶୀଳ । ଖବର କାଗଜରେ ପ୍ରକାଶିତ ଦୁର୍ଜନସିଂ ପରି ଡକାୟତର ଖବର ଉପସ୍ଥିତ ଚରିତ୍ରମାନଙ୍କ ଉପରେ କି ପ୍ରଭାବ ପକାଇଛି ତାହା ଚିତ୍ରିତ । ମଣିଷ ବିପଦ ପୂର୍ବରୁ ଯେପରି ମୁକାବିଲା କରିବାର ରଣ ହୁଁକାର ଦିଏ ବିପଦ ପହଞ୍ଚିଲେ ସେ କିପରି ନିରୁପାୟ ହୋଇଥାଏ ତାହାକୁ ସୁନ୍ଦର ଭାବେ ଚିତ୍ରଣ କରିଛନ୍ତି । ସେହିପରି ସାମାଜିକ ବିଦ୍ରୁପାତ୍ମକ ରଚନା " ଆମ ପ୍ରତିନିଧିଙ୍କ ଠାରୁ" ଜଣେ ସମ୍ବାଦପତ୍ର ପ୍ରତିନିଧିଙ୍କ ଖବର ପରିବେଷଣ ଶୈଳୀଟି ପ୍ରକାଶିତ । ଅଫିସରୁ ଜଣେ କିରାଣୀ ସାମାନ୍ୟ କାଗଜ ଚୋରୀକରି କର୍ମଚ୍ୟୁତ ହେବା କଥା ପ୍ରକାଶ କଲାବେଳେ ଜଣେ ଅସାଧୂ ବ୍ୟବସାୟୀର ଲକ୍ଷ ଲକ୍ଷ ଟଙ୍କାର ହେରଫେରକୁ ଦୁର୍ନିତି ମୁକ୍ତ ଭାବେ ଉପସ୍ଥାପନ କରିଛନ୍ତି । ମୁଖ୍ୟତଃ ଆଜିର ସମ୍ବାଦ ପରିବେଷଣ ଅର୍ଥବଳରେ ନିୟନ୍ତ୍ରିତ

ବୋଲି ନାଟ୍ୟକାର ଏଥିରେ ଉପସ୍ଥାପନ କରିଛନ୍ତି ।

ଆଜିର ବୁଦ୍ଧିଜୀବୀ ମନୁଷ୍ୟ ସ୍ୱୀକୀୟ ଜ୍ଞାନ ଓ ଗାରିମା ସତ୍ତ୍ୱେ ଯେଉଁ ଦୁର୍ଗତ ଜୀବନ ଯାପନ କରୁଛି, ତାର କାରଣ ପରିବାରର ଏକତା ଓ ଆତ୍ମୀୟତା ଧର୍ମୀ ପରିବେଶର ଅଭାବ ଏହା ତାଙ୍କର ପ୍ରସିଦ୍ଧ ନାଟକ ନାଲିପାନ ରାଣୀ ଓ କଳାପାନ ଟିକା (୧୯୬୮)ର ମୁଖ୍ୟ ବିଷୟ । ଏହାର ସଂଳାପ ଶୈଳୀ, ଉପସ୍ଥାପନ କୌଶଳ ଖୁବ୍ କଳାତ୍ମକ । ଏ ନାଟକଟି ଦର୍ଶକଙ୍କ ଦ୍ୱାରା ଖୁବ୍ ପ୍ରଶଂସିତ ହୋଇଛି ।

ତାଙ୍କର ବହୁ ଆଲୋଚିତ ନାଟକ ହେଉଛି ମୃଗୟା । ସୌଖିନ ନାଟ୍ୟ ସଂସ୍ଥା ସଂକେତର ଯଦି କିଛି ଉଲ୍ଲେଖନୀୟ ପରିବେଷଣ ଥାଏ ତାହା ହେଉଛି "ମୃଗୟା" ଏହା ପ୍ରଥମ ଅଭିନୟ ୨/୬/୧୯୭୦ ରେ ହୋଇଥିଲା । ବହୁସ୍ଥାନରେ ବହୁଥର ଏ ନାଟକଟି ଅଭିନୀତ ହୋଇଛି । ଏହାର ନୂତନ ତତ୍ତ୍ୱ ଦର୍ଶକଙ୍କୁ ଯେତେ ବେଶୀ ଅଭିଭୂତ କରିନାହିଁ । ତା ଠାରୁ ବେଶୀ ପ୍ରଭାବିତ କରିଛି ଏହାର ଚମତ୍କାର ମଞ୍ଚାୟନ ଦର୍ଶନ କରି । ଅଧ୍ୟାପକ ଦେବେନ୍ଦ୍ର ମହାନ୍ତିଙ୍କ ଉକ୍ତି " ଏ କଥା ନିର୍ଦ୍ୱନ୍ଦରେ କୁହାଯାଇ ପାରେ ଯେ ମୃଗୟାରେ ଅଭିନୟୋଚିତ ଶିଳ୍ପ ଯେତିକି ତିକ୍ତ, ସାହିତ୍ୟିକ ଶିଳ୍ପ ବୋଧ ସେତେ ତୀକ୍ଷଣ ନୁହେଁ । ମୃଗୟାରେ ନାଟ୍ୟକାର ବହୁ ପରୀକ୍ଷା ନିରୀକ୍ଷା କରିଛନ୍ତି । ସଂଳାପରେ , ଆଲୋକ ସଂପାତରେ , ଉଦ୍ଭଟ ଚେତନା ସୃଷ୍ଟି କରିବାରେ ଓ ପ୍ରତୀକାତ୍ମକ ଶବ୍ଦ ମାଧ୍ୟମରେ ଯୁଗରଚି ଓ ମାନସିକ ଭାବନାକୁ ବ୍ୟକ୍ତ କରିବାରେ ।

ମଂଚର ଫର୍ମୁଲା ମଧ୍ୟରେ ବିଶ୍ୱଜିତ୍ ବାବୁ କେବେ ବି ବାନ୍ଧି ହୋଇ ନାହାନ୍ତି । ତେଣୁ ସେ ଫର୍ମୁଲାଧର୍ମୀ ନାଟକ ଲେଖିନାହାନ୍ତି । ଇଂରାଜୀ ଛାୟାରେ ସେ ଅନେକ ନାଟକ ଲେଖିଛନ୍ତି । ଗୋର୍ଗଲଙ୍କ ଛାୟାରେ ପ୍ରତାପ ଗଡରେ ଦି ଦିନ ବର୍ଣ୍ଣାଡଶଙ୍କ ଅନୁସରଣରେ ପାପୀ : କାମ୍ୟୁଙ୍କ କାଲିଗୁଲା ଅବଲମ୍ୱନରେ ଲେଖିଛନ୍ତି ସମ୍ରାଟ । ଏନିଓ୍ୱାର୍ଡ ଓ ନିଲଙ୍କ ନାଟକ ମୋର୍ଣ୍ଣି ବିମେସ୍ ଇଲେକ୍ଟ୍ରାର ଅନୁସରଣରେ ନାଲିପାନ ରାଣୀ, କଳାପାନଟିକା ନାଟକ ।

ସେ ଯେଉଁ ସୃଷ୍ଟି ଓଡିଆ ପାଠକମାନଙ୍କ ପାଖରେ ଛାଡି ଦେଇଛନ୍ତି ତାହାର ପାଠ୍ୟମୂଲ୍ୟ ଅପେକ୍ଷା ମଂଚମୂଲ୍ୟକୁ ଅଧିକ ଗୁରୁତ୍ୱ ଦେବାକୁ ପରାମର୍ଶ ଦେଇଛନ୍ତି । ତାଙ୍କ ଅନ୍ତିମ ଅଭିଭାଷଣରେ ସେ କହିଛନ୍ତି । ନାଟ୍ୟ ଆନ୍ଦୋଳନର ସହାୟକ ହେବାପରି ନାଟକ କେବଳ ବୈଠକଖାନାର ଆଲମିରା ଶୋଭାବର୍ଦ୍ଧନ ନ କରି କିମ୍ୱା ପାଠ୍ୟ ପୁସ୍ତକ ମଧ୍ୟରେ ଆବଦ୍ଧ ନ ରହି ଏକ ମୁକ୍ତ, ନିଷ୍କପଟ, ନିର୍ଭୀକ ସୃଷ୍ଟିର ସ୍ୱାକ୍ଷର ବହନ କରେ ।

ପ୍ରାୟ ୨୦୦ କଳାକାରଙ୍କୁ ନେଇ ସଂଗୀତ ମହାବିଦ୍ୟାଳୟରେ ୨୦୦୪ ରେ

ମଂଚସ୍ଥ କଲେ ନାଟକ ସୂର୍ଯ୍ୟୋଦୟର ପଥେ । ଉତ୍କଳ ରଂଗମଂଚରେ ଅନନ୍ତ ମହାପାତ୍ରଙ୍କ ନିର୍ଦ୍ଦେଶନାରେ ମଂଚସ୍ଥ ହେଲା, ମହାମାୟା ଅପେରା ଓ ପ୍ରଜାପତୟେ ନମଃ, ସେଇ ତିନି ଜଣା ଶେଷ ଯାଏଁ ତାଙ୍କ ନାଟକ ଲେଖା ସରିନାହିଁ । ଖାଲି ସେ ନାଟକ ଲେଖୁନଥିଲେ ତାଙ୍କ ନାଟକରେ ନିଜେ ଅଭିନୟ କରିବା ସହିତ ନିର୍ଦ୍ଦେଶନା ଓ ମଂଚ ପରିଚାଳନା ମଧ୍ୟ କରୁଥିଲେ କାରଣ ସର୍ବଦା ସେ ନୂଆରୀତିଟିଏ, ନୂଆ ପ୍ରୟୋଗ ଶୈଳୀଟିଏ ପରୀକ୍ଷା ନିରୀକ୍ଷା କରିବାକୁ ଚାହୁଁଥିଲେ ଓ ଦର୍ଶକମାନଙ୍କ ମତାମତ ସଂଗ୍ରହକରି ନିଜେ ନିଜର ସଂଶୋଧନ ପାଇଁ ଆଗ୍ରହୀ ଥିଲେ ।

ସେ କେବଳ ଜଣେ ନାଟ୍ୟକାର, ଅଭିନେତା, ନିର୍ଦ୍ଦେଶକ ନଥିଲେ ବରଂ ଏକ କଥାକାର ଓସ୍ତମ୍ଭକାର ଭାବେ ମଧ୍ୟ ତାଙ୍କର ସୁଖ୍ୟାତ ଅଛି । ନିୟମିତ "ସମ୍ବାଦ" ଖବର କାଗଜ ପୃଷ୍ଠାରେ ଭିନ୍ନସ୍ୱର ସ୍ତମ୍ଭଟି ସେ ଲେଖି ଆସିଛନ୍ତି । ସ୍ତମ୍ଭର ସୀମିତ ପରିସର ମଧ୍ୟରେ ଅପରିସୀମ କଳାତ୍ମକ ଯୁଗଧର୍ମୀ ବିଶ୍ଳେଷଣ ଖୁବ୍ ହୃଦୟଗ୍ରାହୀ । ତାଙ୍କ ଶେଷ ଭିନ୍ନସ୍ୱର ସ୍ତମ୍ଭର ଲେଖା ଥିଲା "ବିଷ୍ଣୁପ୍ରିୟାର ପ୍ରତୀକ୍ଷାରେ" ଓ ଶେଷ ଭାଷଣଟି ଥିଲା । ସ୍ୱାଧୀନତା ପରବର୍ତ୍ତୀ କାଳରେ ନିଜ ନାଟକ ସଂପର୍କରେ" । ସଂନ୍ଧ୍ୟା ୫.୩୦ ମିନିଟ୍ । ସାହିତ୍ୟ ଏକାଡେମୀର ସମ୍ମିଳନୀ କକ୍ଷ ତା ୩୦.୧୨.୦୪ ଏହି ଭାଷଣଟିକୁ ପାଠ କରିବା ସମୟରେ ସେ ଟଳି ପଡିଲେ ଓ ଶେଷ ନିଶ୍ୱାସ ତ୍ୟାଗ କଲେ । ଏକ ସାରସ୍ୱତ ପରିବେଶର ନବନାଟ୍ୟ ଆନ୍ଦୋଳନର ସାରଥି ବିଶ୍ୱଜିତ୍ ଦାସ ନିଜ ଜୀବନର ଅନ୍ତିମ ଅଭିନୟ ସାରି ଓଡିଆ ପାଠକ ନାଟ୍ୟ ଦର୍ଶକ ଆଦିଙ୍କ ମାନସରେ ଚିର ଅମ୍ଳାନ ପ୍ରତିଭା ହୋଇ ରହିଗଲେ ।


ସହାୟକ ଗ୍ରନ୍ଥ :

୧. ଯୁଗେ ଯୁଗେ ନାଟ୍ୟ ସାହିତ୍ୟ - ବୀର କିଶୋର ଦାସ

୨. ଉଭିଟ ନାଟ୍ୟ ପରଂପରା - ରତ୍ନାକାର ଚଇନି ।

୩. ସମ୍ବାଦ ତା ୧.୧.୦୫
ପ୍ରବନ୍ଧ ବିଶ୍ୱଜିତ୍ ଦାସ । ଜୀବନଟା ଏକ ନାଟକ
ପ୍ରାବନ୍ଧିକ - ଗୌରହରି ଦାସ

୪. ସମ୍ବାଦ - ୧.୧.-୫ ବିଷ୍ଣୁପ୍ରିୟାର ପ୍ରତୀକ୍ଷାରେ
ଭିନ୍ନସ୍ୱର - ବିଶ୍ୱଜିତ୍ ଦାସ

୫. ସମାଜ - ୦୨.୦୧.୦୫

ପ୍ରବନ୍ଧ - ସ୍ୱାଧୀନତା । ପରବର୍ତ୍ତୀ କାଳର ନିଜ ନାଟକ ସମ୍ପର୍କରେ - ବିଶ୍ୱଜିତ୍ ଦାସ

୬. ସମ୍ବାଦ - ତା ୦୨୧.୦୧.୦୫

ପ୍ରବନ୍ଧ କ) ଉନ୍ମେଷ ଓ ଉତ୍ତରଣ - ସୂର୍ଯ୍ୟଦେଓ

ଖ) ସଂଜ୍ଞାପ ଭୂଲିଗଲେ - ଅସୀମ ବସୁ

ଗ) ପରବର୍ତ୍ତୀ ନାଟକ ଭାବୁ ଭାବୁ - ଅନନ୍ତ ମହାପାତ୍ର

ମଣିଷ ଭଳି ମଣିଷଟିଏ - ପ୍ରସନ୍ନ କୁମାର ହୋତା

ଭିନ୍ନସ୍ୱର ସମ୍ପର୍କରେ - ଗୋପାଳ ମିଶ୍ର ।



# ଲେଖକ ପରିଚୟ :



ନାମ - ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ରାୟ

ପିତାଙ୍କ ନାମ - ଗୌରାଙ୍ଗ ଚରଣ ରାୟ

ମାତାଙ୍କ ନାମ - ପଞ୍ଚାଳୀ ରାୟ

ଜନ୍ମତାରିଖ - ୦୧.୦୩.୧୯୫୪.

ଶିକ୍ଷାଗତ ଯୋଗ୍ୟତା - ଏମ୍. ଏ (ଓଡିଆ ସାହିତ୍ୟ), ବି. ଏଡ୍

ବୃତ୍ତି - ଶିକ୍ଷକତା

ବ୍ରହ୍ମସୁନ୍ଦର ଉଚ୍ଚ ବିଦ୍ୟାଳୟ, ସୟଦପୁର , ଭାୟା- ଅରେଇ, ଯାଜପୁର

ଠିକଣା :

ଗ୍ରାମ - ଉତରଂଗ

ପୋ. ଅ - ଉତରଂଗ

ଭାୟା - ରାମବାଗ, ଯାଜପୁର

ପ୍ରକାଶିତ ପୁସ୍ତକ ୧. ସତ୍ୟସ୍ନାତା ଶକୁନ୍ତଳା (ଗଳ୍ପ ସଂକଳନ ) ମୂଲ୍ୟ-୬୫.୦୦
ହାସ୍ୟରସ ପ୍ରକାଶନ, ଭୁବନେଶ୍ୱର ୧୯୯୭

୨. ବ୍ୟର୍ଥତାର ଓଁ କାର (ଗଳ୍ପ ସଂକଳନ) ମୂଲ୍ୟ - ୯୫.୦୦
ପୂଜା ପ୍ରକାଶନ, ଭୁବନେଶ୍ୱର - ୧୯୯୯

୩. ମହାସମରର ପ୍ରଶ୍ନ - ଏକାଙ୍କିତା ସଂଗ୍ରହ ମୂଲ୍ୟ ୪୦.୦୦

୪. ଅନ୍ଧ ଆଖିରେ ଦୁନିଆଁ - ପୂଜା ପ୍ରକାଶନ
ଭୁବନେଶ୍ୱର୧୯୯୯
(ଯାତ୍ରାନାଟକ) ମୂଲ୍ୟ - ୫୦.୦୦

୫. ସମର୍ପିତା ଦେବଦାସୀ (ନାଟକ) ସ୍ୱସ୍ତି ପ୍ରକାଶନ
ଭୁବନେଶ୍ୱର - ୧୯୯୯

ପ୍ରକାଶ ଅପେକ୍ଷାରେ ୬. ଯନ୍ତ୍ରଣାର ଜଗନ୍ନାଥ (ନାଟକ)

୭. ଜୀବନର ବର୍ଣ୍ଣବୋଧ (ଗଳ୍ପ)

ନିମ୍ନ ପୁସ୍ତକ ଓ ପତ୍ରପତ୍ରିକାରେ ବିଭିନ୍ନ ଗଳ୍ପ ପ୍ରବନ୍ଧ ପ୍ରକାଶିତ

1. The Journal of B.S.E., Orissa Cuttack
2. Cultural Heritage of Jajpur (2005)

# ସହାୟକ ପୁସ୍ତକ ତାଲିକା

୧. ଓଡିଶାର ଇତିହାସ - ପ୍ୟାରିମୋହନ ଆଚାର୍ଯ୍ୟ
୨. ଓଡିଶାର ସଂକ୍ଷିପ୍ତ ଇତିହାସ - ପଣ୍ଡିତ ବିନାୟକ ମିଶ୍ର
୩. ଓଡିଶାର ଇତିହାସ - ଡ: ଯଜ୍ଞକୁମାର ସାହୁ
୪. ଓଡିଶାର ଇତହାସ - ଡ: ଅତୁଲ ଚନ୍ଦ୍ର ପ୍ରଧାନ
୫. ଓଡିଶାର ଇତିହାସ - ଡ: ସତ୍ୟନାରାୟଣ ରାଜଗୁରୁ
୬. ଭାରତୀ ଭାରତ ଇତିହାସ - ଡ: ରାଜେନ୍ଦ୍ର ପ୍ରସାଦ ଦାସ
୭. ଓଡିଶାର ଇତିହାସ - ଡ: ହରେକୃଷ୍ଣ ମହତାବ
୮. ଯୁଗେ ଯୁଗେ ଯାଜପୁର - ଡ: ଏକଦଶୀ ପାଢୀ
୯. ଉତ୍କଳ ଯୁଗେଯୁଗେ - ସୁରେନ୍ଦ୍ର ମହାନ୍ତି ।
୧୦. ଉତ୍କଳ ପ୍ରତିଭା - ମହେନ୍ଦ୍ର ପଟ୍ଟ ନାୟକ
୧୧. The evolution of Indian Culture - L.N. Lunia
୧୨. Cultural Heritage of Jajpur - F.M. S.S., Bhubaneswar - 2005
୧୩. Orissa Review - 1981.
୧୪. କୋଣାର୍କ ପତ୍ରିକା
୧୫. ଝଂକାର ପତ୍ରିକା
୧୬. ଆସନ୍ତା କାଲି
୧୭. ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ - ସଂ ଗୋପାଳ ଚନ୍ଦ୍ର ପହରାଜ
୧୮. ଓଡିଆ ଆନ୍ଦୋଳନ ର ଇତିହାସ - ପଣ୍ଡିତ ବାଇକୋଳି ମହାପାତ୍ର
୧୯. ଦେଶପ୍ରାଣ ବ୍ରଜସୁନ୍ଦର - ପଠାଣି ପଟ୍ଟନାୟକ
୨୦. ଯୁଗେ ଯୁଗେ ନାଟ୍ୟ ସାହିତ୍ୟ - ବୀର କିଶୋର ଦାସ
୨୧. ଓଡିଆ ନାଟକର ଉଦ୍‌ଭବ ବିକାଶ - ଡ: ରତ୍ନାକର ଚଇନି
୨୨. ଓଡିଆ ନାଟକର ବିକାଶ ଧାରା - ଡ: ହେମନ୍ତ କୁମାର ଦସ
୨୩. ପୌରୁଷ
୨୪. ଓଡିଶାର ଯାତ୍ରା - ରବିନାରାୟଣ ମହାପାତ୍ର
୨୫. ଅଭିମନ୍ୟୁ ଗନ୍ଥାବଳୀ - ସଂ ଗୌରୀ କୁମାର ବ୍ରହ୍ମା
୨୬. ଓଡିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ ଡ: ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ
୨୭. ଅଭିମନ୍ୟୁ ସ୍ମରଣିକା ସ: ଆଶୁତୋଷ ପଟ୍ଟନାୟକ

୨୮. ଓଡିଆ ସାହିତ୍ୟ ର ଇତିହାସ - ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସ
୨୯. ସଂବାଦ ପତ୍ର ଉନବିଂଶ ଶତାବ୍ଦୀର ଓଡିା - ଡ: ଗୋପାଳ ଚନ୍ଦ୍ର ମିଶ୍ର
୩୦. ଆଧୁନିକ ଓଡିଆ ସାହିତ୍ୟ ର ଇତିହାସ : ଡ: ନଟବର ସାମନ୍ତରାୟ
୩୧. ହେ ସାଥି ହେ। ସାରଥି - ନିତ୍ୟାନନ୍ଦ ମହାପାତ୍ର
୩୨. ମୋ ବାର ବୁଲା ଜୀବନ - ପଦ୍ମଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ
୩୩. ଅର୍ଦ୍ଧ ଶତାବ୍ଦୀର ଇତିହାସ ଓ ତହିଁରେ ମୋ ସ୍ଥାନ - ଗୋଦାବରିଶ ମିଶ୍ର
୩୪. ବ୍ରଜସୁନ୍ଦର ସ୍ମରକୀ ଗନ୍ଥ - ଉତ୍କଳ ସାହିତ୍ୟ ସମାଜ
୩୫. ଆଧୁନିକ ଓଡିଆ ସହିତ୍ୟ, ଜାନକୀ ବଲ୍ଲଭ ମହାନ୍ତି
୩୬. ଶତାବ୍ଦୀର ସୂର୍ଯ୍ୟ - ସୁରେନ୍ଦ୍ର ମହାନ୍ତି
୩୭. ଉତ୍କଳର ବୌଦ୍ଧ ଯୁଗର ଇତିହାସ ଓ ଅନ୍ୟାନ୍ୟ ପ୍ରବନ୍ଧ - ବିରୁପାକ୍ଷ କର
ସଂ - ଡ. ଅସିତ୍ କବି, ଅଧାପକ ବାଉରୀବନ୍ଧୁ କର
୩୮. ପ୍ରାଚୀନ ଉତ୍କଳର ଜଳଯାତ୍ରା - ବିରୁପାକ୍ଷ କର
୩୯. ବିରୁପାକ୍ଷ ପ୍ରବନ୍ଧାବଳୀ - ବିରୁପାକ୍ଷ କର - ସଂ ବାଉରୀବନ୍ଧୁ କର
୪୦. କିବି ମଂଜୁଳ କୃଷ୍ଣପ୍ରସାଦ ଗ୍ରନ୍ଥାବଳୀ - ସଂ ଅଧାପକ କୁଳମଣି ଜେନା
୪୧. ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଗ୍ରନ୍ଥାବଳୀ
୪୨. ଉଦ୍‌ଭଟ୍ଟ ନାଟ୍ୟ ପଂରଂ ପରା - ଡଃ ରତ୍ନାକର ଚଇନି
୪୩. ନବରବି ପତ୍ରିକା .

